# ଶ୍ରୀବତ୍ସ - ଆତ୍ମଚରିତ



ସ୍ୱର୍ଗୀୟ ଶ୍ରୀବତ୍ସ ପଣ୍ଡାଙ୍କ ୧୦୨ତମ ଜୟନ୍ତୀ ଉପଲକ୍ଷେ

# ଶ୍ରୀବତ୍ସ - ଆତ୍ମଚରିତ

ବୈଦିକ ସାହିତ୍ୟ ସଂସ୍ଥାନ
ବେଦବ୍ୟାସ,
ରାଉରକେଲା-୪

ପ୍ରକାଶକ—

**ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ**

ସଭାପତି ଶ୍ରୀବତ୍ସ ଗୋରକ୍ଷାଶ୍ରମ,

ଛନରଡ୍ଡା (ଗଞ୍ଜାମ)



ଦ୍ୱିତୀୟ ସଂସ୍କରଣ—୧୦୦୦

୧୯୭୨

*Oriya Autobiography of* Sribatsa Panda.

*Second Impression......1972*

*Published by H.H. Swami Brahmananda Saraswati*-

C. Vedic Sahitya Sansthan

*Ved-vyas, Rourkela-4*



**Price. Rs. 2 /-**

(ମୂଲ୍ୟ-ଦୁଇ ଟଙ୍କା ମାତ୍ର)



# ସମର୍ପଣ—

ଭଗିରଥ ସମ ତୁମେ ଆଣିଲ ଗଙ୍ଗାକୁ
ବୈଦିକ ବସ୍ତୁରେ କରି ଜୀବନ ସଂସ୍କାର
ସତ୍ୟ ପାଇଁ ଶତ ଅପମାନ ନିନ୍ଦା କରି
ଅନ୍ଧ ପରମ୍ପରା ପରେ ଲଗାଇ ବାରୁଦ
ନିର୍ଭୟରେ ପ୍ରକାଶିଲ ବୈଦିକ ସାହିତ୍ୟ,
ବିପ୍ଳବୀ ହେ, ସତ୍ୟକାମ ତୁମେ ସ୍ମାରକ ॥

# —ଃ ପ୍ରାକ୍‌କଥନୀ ଃ—

ଊନବିଂଶ ଶତାବ୍ଦୀର ମଧ୍ୟଭାଗ···ଭାରତର ଭାଗ୍ୟାକାଶରେ ବ୍ରିଟିଶ୍ କେଶରୀର ଲାଲ ଝଣ୍ଡା । ପାଶ୍ଚାତ୍ୟ ସଭ୍ୟତାର ରଥଚକ୍ର ତଳେ ନିଷ୍ପେଷିତ ଏ ଜାତିର ମହାନ୍ ପରଂପରା । ଠିକ୍ ଏହିଭଳି ସନ୍ଧିକ୍ଷଣରେ ଜନ୍ମ ନିଅନ୍ତି ଯୋଗଜନ୍ମା ବେଦୋଦ୍ଧାରକ ମହର୍ଷି ଦୟାନନ୍ଦ । "ଏକ ନିର୍ବାଣୋନ୍ମୁଖୀ ସଂସ୍କୃତି ପ୍ରଦୀପରେ ଯେଉଁ ତୈଳ ପ୍ରଦାନ କଲେ ତାହା କେବଳ ସୁଜଳା ସୁଫଳା ଭାରତ ନୁହେଁ, ବରଂ ତାହା ଥିଲା ସମଗ୍ର ମାନବ ସମାଜର ଜୀବନଧାରା ପଥରେ ଏକ ଉତ୍ତମ ଆଲୋକର ଆଭା" । ଆର୍ଯ୍ୟ ଅନାର୍ଯ୍ୟର ସଂଘର୍ଷ ମଧ୍ୟରେ କଳା ଗୋରାର ଭେଦଭାବର ବହ୍ନିବଳୟରେ ପ୍ରାଚ୍ୟ ପାଶ୍ଚାତ୍ୟ ବନ୍ଧନର ବହ୍ନି ଉପରେ ଏହି ସୀମାହୀନ ଆକାଶ ତଳେ "ବସୁଧୈବ କୁଟୁମ୍ବକମ୍"ର ଆଦର୍ଶ ନେଇ ପୁଣି ଆର୍ଯ୍ୟାବର୍ତ୍ତ ଭାରତର ଗଗନପବନରେ ଝଂକୃତ ହୋଇ ଉଠିଲା ବେଦର ଲଳିତ ମଧୁର ଗୁରୁଗମ୍ଭୀର ନିନାଦ । ସୁପ୍ତ କେଶରୀର ପ୍ରାଣରେ ଜାଗୃତିର ଗୀତିକା, ଏ ଦେଶର ମହାନ ପରମ୍ପରା ଆର୍ଯ୍ୟ ସଂସ୍କୃତି, ତୁଷାର ଶୁଭ୍ର କାଞ୍ଚନ ଜଙ୍ଘାର ଶିଖରଦେଶରେ ମଥା ପିଟିଲା ।

ଯେତେବେଳେ ମହର୍ଷିଙ୍କର ତେଜୋଦୀପ୍ତ ବାଣୀ ଆକୁମାରୀ ହିମାଚଳ ପ୍ରକଂପିତ କଲା, ଠିକ୍ ସେତିକିବେଳେ ବାସ୍ତବ ଦାୟାଦର ଅଙ୍ଗୀକାର ଶପଥ ନେଇ ଉତ୍କଳ ଭୂମିରେ ଅସ୍ତମିତ ଆର୍ଯ୍ୟ ସଂସ୍କୃତିର ଉଦ୍ଦୀପନ୍ତ ଆଲୋକ ନେଇ ଜନ୍ମ ନିଅନ୍ତି ସଂସ୍କାରକ ଶ୍ରୀବିଶ୍ୱ ପଣ୍ଡା । ଉତ୍ଥବା ଆଖିର ଲୁହ; ଅନ୍ତର ବୁକୁର ବିଷାଦ, ଶ୍ରୀବିଶ୍ୱଙ୍କ ପ୍ରାଣରେ ଭରିଦେଲା ଅପୂରନ୍ତ ସମବେଦନାର ଉଚ୍ଛ୍ୱାସ । କେବଳ

ଗୋଟିଏ ବିଧବା ବା ଗୋଟିଏ ଅଛୁତ ନୁହେଁ, ବରଂ କୋଟିଏ ଜନତାର ବୁକୁର ବେଦନା ତାଙ୍କର ଦରଦୀ ପ୍ରାଣରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କଲା । ତତ୍କାଳୀନ ଉତ୍କଳୀୟ ସମାଜର ଗତ ମାତ ଗୁଳଚଳନ ଗଡ଼ଡାଳିକା କଥା ଓ ପ୍ରଥା, ଶିକ୍ଷା ସଭ୍ୟତା ସଂସ୍କୃତି ଓ ପ୍ରଗତିର ହ୍ରାସ ନେଇ ଯେଉଁଥିଁ ଏକ ଅପ୍ରୀତିକର ଦୁଃସ୍ଥ ବାତାବରଣ ସୃଷ୍ଟି କରିଥିଲା, ତାହାହିଁ ଆର୍ଯ୍ୟ ସଂସ୍କୃତିର ପତନର ଏକମାତ୍ର କାରଣ । ସ୍ୱାମୀ ଦୟାନନ୍ଦଙ୍କର ଧର୍ମ ଭିତରେ ବର୍ବରତାର ଯେଉଁ ଖଣ୍ଡିଆ ଲୁଚି ରହିଥିଲା ତାହା ଏ ସଂସ୍କୃତିକୁ ସମୂଳେ ପାଇଁ ନଷ୍ଟ କରିଦେଇଥାନ୍ତା । ପୁଣ୍ୟତୋୟା ମନ୍ଦାକିନୀର ଶୁଭ୍ରଧାରା ଭଳି ମହର୍ଷି ଦୟାନନ୍ଦଙ୍କ ଜ୍ଞାନମେରୁର ଶିଖର ପ୍ରଦେଶରୁ ଝରିଆସିଲା ଶ୍ରୀବତ୍ସଙ୍କ ଭଳି ଏକ ସ୍ୱଚ୍ଛ ଓ କ୍ଷିପ୍ରଧାରା ।

ଉତ୍କଳୀୟ ଆର୍ଯ୍ୟ ସାହିତ୍ୟ ଜଗତର ମହାନ୍ ସାରଥି ସ୍ୱର୍ଗୀୟ ଶ୍ରୀବତ୍ସ ପଣ୍ଡାଙ୍କ ଅମ୍ଳାନ ସାହିତ୍ୟକୃତି ଉତ୍କଳର ଗଣ-ଜୀବନରେ ଆଣିଥିଲା ଏକ ନୂତନ ଚେତନା । ଜଣେ ଜନପ୍ରିୟ ବକ୍ତା ହିସାବରେ ତାଙ୍କର ଖ୍ୟାତି ଏବେ ବି ଓଡ଼ିଆ ପ୍ରାଣରେ ବଞ୍ଚି ରହିଛି । କେବଳ ଧର୍ମ ସଂସ୍କୃତି ବା ସଂସ୍କାର ନୁହେଁ, ରାଜନୀତି ଜଗତରେ ତାଙ୍କର ଅବଦାନ ଅବିସ୍ମରଣୀୟ । ଗଞ୍ଜାମ ଜିଲ୍ଲାର କଂଗ୍ରେସ ସଂଗଠନର ସେ ଥିଲେ ପ୍ରଥମ ସଭାପତି । ଆଜିର ଏ ପୁଣ୍ୟ ଦିବସରେ ତାଙ୍କର ବହୁମୁଖୀ ପ୍ରତିଭା ପ୍ରଣିଧାନ ଯୋଗ୍ୟ ।

ଭଞ୍ଜନଗରଠାରୁ ତିନି ମାଇଲ ଦୂରରେ ଅବସ୍ଥିତ 'ତନରଡ଼ା' ଶ୍ରୀବତ୍ସ ପଣ୍ଡାଙ୍କର ସାଧନାପୀଠ ହିସାବରେ ପ୍ରତି ଉତ୍କଳୀୟଙ୍କ ଏକ ମହାନ୍ ତୀର୍ଥ କ୍ଷେତ୍ର । ସେହି ମହାପୁରୁଷଙ୍କର ଜନ୍ମର ବହୁ ବର୍ଷପରେ ତାଙ୍କର ସ୍ମୃତି ତାଙ୍କର ଗୀତ ଓ ତାଙ୍କର ଆଶୀଷ ନେଇ, ସେହି ପୁଣ୍ୟ ସାଧନାପୀଠରେ ପୁଣି ନେଇ ଉଠିଛି ଭାରତର ପଶ୍ଚିମ ଓ ଓଡ଼ିଶାର

ପ୍ରଥମ ଆର୍ଯ୍ୟ କନ୍ୟା ଗୁରୁକୁଳ । ସାଧକ ଜୀବନର ସାଧନା କେବେ ନିଷ୍ଫଳ ହୁଏନା । ଐତିହାସିକ ଉତ୍କଳ ଭୂଖଣ୍ଡରେ ଧୈମ୍ୟ ଉପମନ୍ୟୁର ପରମ୍ପରା·····, ଗାର୍ଗୀ, ମୈତ୍ରୀର ଆରାଧନା······ । ଆଜ ସେହି ଛନ୍ଦାପ୍ଲୁତ-ମଞ୍ଜୁଳ-ବଜୁଳ ଆମ୍ର କୁଞ୍ଜ ସୁଶୋଭିତ କନ୍ୟା ଗୁରୁକୁଳ ପ୍ରାଙ୍ଗଣରେ ନିତ୍ୟପ୍ରତି ଉଷାପ୍ରଦୋଷରେ କୁମାରୀ କଣ୍ଠରେ ଝଙ୍କାରି ଉଠେ ଛନ୍ଦୋବଦ୍ଧ ବେଦ ମନ୍ତ୍ରର ମନ୍ଦ ମଧୁର ସ୍ୱର ଲହରୀ······ । ପବିତ୍ର ଅଗ୍ନିହୋତ୍ରର ଧୂମପଟଳ ଆଜିର ଏ ବିଂଶ ଶତାବ୍ଦୀର ବୁକୁ ଉପରେ ପୁଣି ସେହି ଘୁମନ୍ତ ଅତୀତର ପୁନରବତାରଣା କରେ । ଶ୍ରୀବତ୍ସଙ୍କର ନଶ୍ୱର ଶରୀର ଏ ବିଶ୍ୱର ପ୍ରତି ଧୂଳିକଣାରେ ମିଶି ଯାଇଛି, ଆଜିର ତାଙ୍କର ଏହି ୧୦୨ତମ ଜନ୍ମ ବାର୍ଷିକ ଉତ୍ସବରେ ସେହି ବିଗତ ଆତ୍ମା ପ୍ରତି ଏତିକି ପ୍ରାର୍ଥନା; ତାଙ୍କର ସାଧନା, ତାଙ୍କର ଆଦର୍ଶ ଓ ତାଙ୍କର ଉତ୍ସର୍ଗୀକୃତ ଜୀବନ ଯୁଗେ ଯୁଗେ ଏ ଜାତିକୁ ନମନୀୟ ଓ କମନୀୟ କରୁ ।

ଶ୍ରୀବତ୍ସ ଆତ୍ମ ଜୀବନ ଚରିତର ଦ୍ୱିତୀୟ ସଂସ୍କରଣର ପ୍ରକାଶନ ବେଳେ ପ୍ରଥମେ ମୁଁ ସ୍ୱାମୀ ବେଦାନନ୍ଦ ସରସ୍ୱତୀ ( ବାସୁଦେବ ତ୍ରିପାଠୀ )ଙ୍କୁ ସାଦର ଶ୍ରଦ୍ଧାଞ୍ଜଳି ଜଣାଉଛି । ସ୍ୱର୍ଗୀୟ ପଣ୍ଡାଙ୍କର ପ୍ରିୟଶିଷ୍ୟ ହିସାବରେ ତାଙ୍କର ଉଦ୍ଦେଶ୍ୟସାଧନ ନିମିତ୍ତ ସ୍ୱାମୀ ବେଦାନନ୍ଦଙ୍କର ଯେଉଁ ପ୍ରଗାଢ଼ ଚେଷ୍ଟା, ନିଷ୍ଠା ଓ ପ୍ରଚେଷ୍ଟା ବାସ୍ତବିକ ଅଭିନନ୍ଦନୀୟ ୧୯୫୩ ମସିହାରେ ଆମର ବାଲ୍ୟ ବନ୍ଧୁ ସ୍ୱର୍ଗୀୟ ଶ୍ରୀ ରତ୍ନାଧର ଆର୍ଯ୍ୟଙ୍କ ପ୍ରଯତ୍ନରେ ଶ୍ରୀବତ୍ସ ଆତ୍ମ ଚରିତ ଲୋକ ଲୋଚନକୁ ଆସିଥିଲା । ଏ ମଧ୍ୟରେ ପର୍ଦ୍ଦାନ ବିତି ଯାଇଛି, ସଭ୍ୟତାର ରଙ୍ଗ ବଦଳିଛି, ଦୁନିଆଁର ରୂପ ବି ବଦଳିଛି । ସେହି ଅଦଳ ବଦଳ ଭିତରେ ଜଣେ ବିପ୍ଳବୀ ସାଧକ ଜୀବନରେ ଚରିତ ଅନାବଶ୍ୟକ ହୋଇ ଚଳିଛି ।

ସୁଖର କଥା ଆଜ ତାର ପୁଣି ନୂତନ ରୂପ ଆତ୍ମପ୍ରକାଶ କରୁଛି । ସେଥିପାଇଁ ମୁଁ ବିଶେଷ ଆନନ୍ଦିତ । ଏହି ଦ୍ୱିତୀୟ ସଂସ୍କରଣର ଅବ-ତାରଣା ସମ୍ଭବ ହୋଇ ପାରିଛି ବୈଦିକ ସାହିତ୍ୟ ସଂସ୍ଥାନ ବେଦବ୍ୟାସର ସହଯୋଗିତାରେ । ସେହି ଯଶସ୍ୱୀ ମନସ୍ୱୀଙ୍କର ଆଦର୍ଶ ପ୍ରତ୍ୟେକ ହୃଦୟରେ ପ୍ରତିଫଳିତ ହେଉ, ଏତିକି କାମନା ।

॥ ଇତ୍ୟୋମ୍ ॥

ଜନ୍ମାଷ୍ଟମୀ
ବିକ୍ରମୀ ସମ୍ବତ୍ ୨୦୨୯
ଦୟାନନ୍ଦାବ୍ଦ ୧୪୮
ତା ୩୧ । ୮ । ୧୯୭୨

**ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ**
ଗୁରୁକୁଳ ବୈଦିକ ଆଶ୍ରମ
ବେଦବ୍ୟାସ, ରାଉରକେଲା-୪

# * ସଂସ୍କାରକ ଶ୍ରୀବତ୍ସ ପଣ୍ଡା *

ସ୍ୱର୍ଗୀୟ ଶ୍ରୀବତ୍ସ ପଣ୍ଡାଙ୍କ ଜୀବନ ଥିଲା ଏକ ସାଂସ୍କୃତିକ ସଂଘର୍ଷର ସମର ଭୂମି । ଗୋଟିଏ ପାଖରେ ଗତାନୁଗତିକ ଘୋଷିବାଦ ବ୍ୟାପ୍ତ ଅନ୍ଧ ପରମ୍ପରାର ଦାୟାଦମାନେ ଛିଡ଼ା ହୋଇଥିଲେ ତ ଅନ୍ୟ ପାଖରେ ଭାରତୀୟ ଆର୍ଯ୍ୟ ସଂସ୍କୃତିର ଜୀବିତ ଜାଗ୍ରତ ଆର୍ଷ ବାଣୀର ମଥା ଟେକି ଛିଡ଼ା ହୋଇଥିବାର ସେ ଦେଖିଥିଲେ । ତେବେ ପ୍ରଶ୍ନ ଥିଲା କାରଣ କବନ୍ଧରେ ଦାୟୀ ନା ପୁଅରେ ଦାୟୀ ।

ଧର୍ମ ନାମରେ ଧୃଷ୍ଟତାକୁ କିପରି ତାଙ୍କର ବଳିଷ୍ଠ ଯୁକ୍ତି ଗ୍ରହଣ କରିବ ? କୌଣସି ମାନବିକତାର ପୂଜାରୀ, ମାନବର ଉପାସକ, ସତ୍ୟର ପତାକାବାହୀ ମଣିଷର ହୃଦୟରେ ଏସବୁ ଆତ୍ମ ପ୍ରତାରଣା ପାଇଁ ସ୍ଥାନ କାହିଁ ? ଏଣୁ ସେ ଦେଖିଲେ 'ସତ୍ୟାର୍ଥ ପ୍ରକାଶ'ରେ ସତ୍ୟର ନିଷ୍ଠା, ଏ ସତ୍ୟ ପାଇଁ ତାଙ୍କର ଜନ୍ମ । ଏଣୁ ମାନ ଅପ-ମାନକୁ କିମ୍ଭ କରି ଏ ଅବୁଝା ହିନ୍ଦୁ ସମାଜ ଆଗରେ ସେ ବାଢ଼ିଲେ ସ୍ୱ ଆତ୍ମ 'ନିବେଦନ'—

"ତଥାପି ବିବେକୀ ନିରପେକ୍ଷ କର୍ମୀ
ସମାଜ ନିନ୍ଦାକୁ କଦା ନଡ଼ରି,
ହେଉପଛେ ନିଜ ଶରୀର ପତନ
ଯାଆନ୍ତି କର୍ତ୍ତବ୍ୟ କରମ କରି ।"

ଭଗିରଥ ପରି ଦୁଃଖ ଦୁର୍ଦ୍ଦଶାକୁ ଏଡ଼ାଇ ସେ ସୁଧାସ୍ୱାଦୀ ଅମୃତ ଅର୍ଯ୍ୟ ବଗ୍ୟରର ମନ୍ଦାକିନୀ ଓଡ଼ିଶାକୁ ପ୍ରଥମେ ଆଣିଲେ । ତାଙ୍କର ଭାଷାରେ, ଭାବରେ, କର୍ମରେ ପ୍ରଚଳିତ ଅନ୍ଧବିଶ୍ୱାସ ବିରୁଦ୍ଧରେ ଥିଲା ଘୋର ପ୍ରତିବାଦ । ଏପରିକି ପ୍ରକୃତି କବି ଗଙ୍ଗାଧର ମେହେର ଏବଂ ବ୍ୟାସ କବି ଫକୀର ମୋହନ ସେନାପତିଙ୍କୁ ମଧ୍ୟ ସେ ପ୍ରତ୍ୟକ୍ଷ ହେଉ ବା ପରୋକ୍ଷ ଭାବେ ହେଉ ତାଂକର ଏ ବଗ୍ୟରରେ ପ୍ରଭାବିତ କରିପାରି ଥିଲେ ।

ସମ୍ବଲପୁର ଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଏକାଦଶ ଅଧିବେଶନବେଳେ ଫକୀର ମୋହନ ତାଙ୍କୁ କହିଥିଲେ, "ଆପଣଂକର ସବୁ ଲେଖା ମୁଁ ମନଯୋଗ ଦେଇ ପଢ଼େ । ଆପଣଙ୍କୁ ଅନେକ ଲୋକ ଗାଳି ଦେଇଥାନ୍ତି । ବୁଝିବେ ଯେ ଆପଣଂକ ଲେଖାରେ କିଛି ସାର କଥା ଥିବାରୁ ସେ ପଢ଼ନ୍ତି ଏବଂ ଗାଳି ଦିଅନ୍ତି । ସାର କଥା ନଥିଲେ କେହି ଗାଳି ଦିଅନ୍ତେ ନାହିଁ ।"

ଗଙ୍ଗାଧର ମେହେର ତାଙ୍କ ପ୍ରତି ଯେଉଁ ଶ୍ରଦ୍ଧାପୂର୍ଣ୍ଣ ଶବ୍ଦ ବ୍ୟବହାର କରିଛନ୍ତି, ଏଥିରୁ ତାଙ୍କର ସାହିତ୍ୟିକ ମର୍ଯ୍ୟାଦା ଅତି ସୁସ୍ପଷ୍ଟ । "ଶ୍ରୀବତ୍ସ ବାବୁ, ଆପଣଙ୍କ ଲେଖାର ବିଶେଷତ୍ୱ ମୁଁ ଉପଲବ୍ଧି କରିଛି । ତହିରେ ନିର୍ଭିକ ସତ୍ୟବାଦିତା ସ୍ପଷ୍ଟ ଦେଖାଯାଏ । ତଦ୍ୱାରା ବହୁ ଲୋକଙ୍କର ବହୁ ଉପକାର ଘଟିଥାଏ ।"

ସେ ଏପରି ସମୟରେ ଓଡ଼ିଶାରେ ଜନ୍ମ ହୋଇଥିଲେ ଯେଉଁ ସମୟର ସମାଜ ଥିଲା ରକ୍ଷଣଶୀଳ, ବ୍ରାହ୍ମଣମାନଙ୍କର ଅଖଣ୍ଡ ଆଧିପତ୍ୟରେ ଜନଜୀବନ ଥିଲା ବିପନ୍ନ । ସଂସ୍କୃତି ଓ ପରଂପରା ନାମରେ

ନିରୀହ ଜନସମାଜକୁ କର୍ମକାଣ୍ଡର ଜାଲରେ ପକାଇ ସେମାନେ ହନ୍ତସନ୍ତ କରୁଥିଲେ । ବ୍ରାହ୍ମଣ ଭୋଜନ ନାମରେ ଶ୍ରାଦ୍ଧ କରି ନିଜର ସ୍ୱାର୍ଥ ସାଧନ କରିବା ହିଁ ସେମାନଙ୍କର ଧର୍ମର ପରିଭାଷା ହୋଇ ପଡ଼ିଥିଲା । ପୁଷ୍କର ପତିତପାବନ ଶ୍ରୀକ୍ଷେତ୍ର ଥିଲା ଏମାନଙ୍କର ସ୍ୱାର୍ଥର ଘୃତ ଭାଣ୍ଡ ଠିକ ଯେପରି ଜିରୁସାଲମ ମନ୍ଦିର ଇହୁଦୀମାନଙ୍କର ଭଣ୍ଡାମିର ତୀର୍ଥ ସ୍ଥଳୀ ଥିଲା ।

ସେ ମାନିଲେ ନାହିଁ । ନିଜେ କୁଳୀନ ବ୍ରାହ୍ମଣ ସନ୍ତାନ ହୋଇ ବ୍ରାହ୍ମଣମାନଙ୍କର ଏ ଅତ୍ୟାଚାରର ବିରୁଦ୍ଧରେ ତାଙ୍କର ବଳିଷ୍ଠ ଲେଖନୀ ଉଠାଇଲେ । ସ୍ୱାମୀ ଦୟାନନ୍ଦ ବ୍ରାହ୍ମଣ ସନ୍ତାନ ହୋଇ ମଧ୍ୟ ପୌରାଣିକ ଅହେତୁକ ପରମ୍ପରା ବିରୁଦ୍ଧରେ ଯେପରି କଟିବଦ୍ଧ ହୋଇ ଛିଡ଼ା ହୋଇଥିଲେ, ଠିକ ସେପରି ସେ ମହର୍ଷି ଦୟାନନ୍ଦଙ୍କର ସତ୍ୟାର୍ଥ ପ୍ରକାଶ ପରି ଓଡ଼ିଶାରେ ଆର୍ଯ୍ୟ ସମାଜର ଆଲୋକ ଆଣିଲେ । ପ୍ରମିଥିଅସ ସ୍ୱର୍ଗରୁ ଅଗ୍ନି ଆଣି ନିଜେ ଜଳିପୋଡ଼ି ପାଉଁସ ହୋଇଯିବା ପରି ସମାଜର ତୀବ୍ର ସମାଲୋଚନାକୁ ନିର୍ବିକାରରେ ସେ ସହିଗଲେ ।

ସେ ବଜ୍ର ନିର୍ଘୋଷ ଶବ୍ଦରେ କହିଲେ— "ଶ୍ରାଦ୍ଧ ପରେ ବ୍ରାହ୍ମଣ ମାନଙ୍କର ଠକାମୀ, ମୃତ ବ୍ୟକ୍ତିର କୌଣସି ଉପକାର ଏତଦ୍ୱାରା ହୁଏ ନାହିଁ । ତତ୍‌କାଳୀନ ବ୍ରାହ୍ମଣ ସମାଜକୁ ସେ କହି ଉଠିଲେ— "ଆଜି କାଲିର ବ୍ରାହ୍ମଣମାନେ ବିଶେଷତଃ ଶାସନୀ ବ୍ରାହ୍ମଣୀମାନେ ଜହ୍ନାଳିଜଣା ବା ଟୋଡ଼ା ପେଟ ପାଇଁ ଦାଣ୍ଡଦ୍ୱାରେ ଶୁଣ୍ଠି ପିଣ୍ଡା ହୋଇ ବୁଲୁଛନ୍ତି ; ଏକଥା ସେ ସମୟରେ କହିବା କିଛି କମ କଥା ନଥିଲା ।

ସେ ବୁଝିଥିଲେ କେବଳ ସଂସ୍କୃତ ସଭ୍ୟତା ଦ୍ୱାରା ପେଟ ପୂରେ - ନାହିଁ । କେଉଁ ବିପ୍ରର ଅମଳ କର୍ମରେ ପ୍ରଜ୍ୱଳିତ ଦେଖିଲେ ତା କ କର୍ମ ? । ଯିରୁସାଲମ ମନ୍ଦିର ସମଗ୍ର ଖ୍ରୀଷ୍ଟିୟାନ ଓ ଇହୁଦୀ ଜାତିର

ତୀର୍ଥ କ୍ଷେତ୍ର ଠିକ ସେପରି ପୁରୀ ମନ୍ଦିର ହିନ୍ଦୁ ଜଗତର ମହାନ ଧର୍ମ ପୀଠ । ପତିତପାବନ ଜଗନ୍ନାଥ କେବଳ ହିନ୍ଦୁ ଜଗତର ମୂର୍ତ୍ତିମନ୍ତ ସେ ବିଶ୍ୱର ସର୍ବହରା ଜଗତର ମହାନ ଦେବତା ଯେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମୁନ୍ନୟ ଓ ଶାନ୍ତିର ବିଗ୍ରହ କରିଛନ୍ତି ତାଙ୍କରି ଆନନ୍ଦ ବଜାରରେ । ଏ କ୍ଷେତ୍ରରେ ଅନ୍ୟାୟ ହେଲେ, କେଉଁଠି ନ୍ୟାୟ ହେବ ? ଏ ପ୍ରଶ୍ନ ଶ୍ରୀବତ୍ସ ପଣ୍ଡାଙ୍କୁ ବୈଦିକ ଧର୍ମରେ ଦୀକ୍ଷିତ କରାଇଥିଲା ।

ଦିନେ ଭଗବାନ ଯୀଶୁଖ୍ରୀଷ୍ଟ ସେପରି ଇହୁଦୀ ଜାତିର ଏକ-ଗୁଟିଆ ବାଣିଜ୍ୟ ବିରୁଦ୍ଧରେ ଯିରୁସାଲମରେ ତାଙ୍କର ବୈପ୍ଳବିକ କ୍ରାନ୍ତିର ଆହ୍ୱାନ କରିଥିଲେ ଏବଂ ଏହାର ପରିଣାମ ହେଲା ଭୟାବହ । ତାଙ୍କୁ କଣ୍ଟା, କ୍ରସରେ କଣ୍ଟା ପିଟିଦିଆ ହେଲା । ଠିକ ସେପରି ଯେତେବେଳେ ଶ୍ରୀବତ୍ସ ପଣ୍ଡା, ପଣ୍ଡା ପୁରୋହିତଙ୍କ ବିଷୟରେ ଲେଖିଲେ 'ପୁରୀ ଦେଉଳରେ ଯେତେବେଳେ ମୃଦଙ୍ଗ ଯାଇପାରେ । ପ୍ରତି ଚର୍ମ ଖୋଳ ବା କୌଣସି ଚର୍ମ ନିର୍ମିତ ବସ୍ତୁ ପ୍ରତି ଏହି ନିଷେଧର କାରଣ ଜଣାଯାଏ ନାହିଁ । ବୋଧହୁଏ ମୃଦଙ୍ଗ ତିଆରି ହେଲାବେଳେ ଏହି ମୁଣି ବା ଖୋଳର ତିଆରି ହୋଇ ନଥିଲା ।

ଏକଥାର ପ୍ରତିକ୍ରିୟା ଉଠିଲା । ତାଙ୍କ ଆତ୍ମ ଚରିତରେ ସେ ଲେଖିଛନ୍ତି— 'ଥରେ ପୁରୀ ମୁକ୍ତି ମଣ୍ଡପ ଦୋଷଗୁଣ ମାହାତ୍ମ୍ୟ ସମାଲୋଚନା କରି କିଛି ଲେଖିଥିଲି । ମୋର ସେ ଲେଖା ଦେଖି ସେଠାକାର କେହି କେହି ପଣ୍ଡିତମାନେ ପଣ୍ଡାଙ୍କୁ ଧରିବା କପରି ଧରିଛି ବୋଲି ମୋପ୍ରତି କଟୁ କଟାକ୍ଷ କରି ଥିଲେ ।

ଦିନକର ଘଟଣା । ବଡ଼ ଦେଉଳକୁ ଶ୍ରୀବତ୍ସ ବୁଲିବାକୁ ଯାଇଛନ୍ତି । ଫେରି ଆସିବା ସମୟରେ ମୁକ୍ତିମଣ୍ଡପର କେତେକ ବ୍ରାହ୍ମଣ

ତାଙ୍କୁ 'କଳା ପାହାଡ଼' ସମ୍ବୋଧନ କରି ଡ଼ାକଲେ । ବ୍ରାହ୍ମଣମାନଙ୍କୁ ଉତ୍ତର ଦେବାକୁ ଯାଇ ସେ ଦୃଢ଼ କଣ୍ଠରେ କହି ଉଠିଲେ —

"ମୋପରି ଉତ୍କଳରେ ଯେଉଁଦିନ ଲକ୍ଷେ କଳାପାହାଡ଼ ବାହାରିବେ, ସେତେବେଳେ ଦେଶର ସଂସ୍କାର ହେବ ।"

ସେ କେବଳ ସଂସ୍କାରକ ନଥିଲେ ତତ୍‌ସଙ୍ଗେ ସଙ୍ଗେ ସେଥିଲେ ଜଣେ ଉଚ୍ଚକୋଟୀର ସାହିତ୍ୟିକ । ସାହିତ୍ୟିକର ଲକ୍ଷ୍ୟ ଓ ଆଦର୍ଶ ସମାଜ ସଂସ୍କାର କରିବା । ମାତ୍ର ସେ ଦେଖିପାରି ଥିଲେ ସାହିତ୍ୟିକ-ଗଣ ସାହିତ୍ୟ ପ୍ରତି ଯେତେ ଆଗ୍ରହୀ ନୁହଁନ୍ତି ନିଜର ନାମ ପଛରେ ସେତେ ଲାଳାୟିତ । ଓଡ଼ିଶାର ଏ ପ୍ରକାର ସାହିତ୍ୟିକ, କବିଙ୍କୁ ସେ ଉଚିତ ଶିକ୍ଷା ଦେବାକୁ ଯାଇ ସ୍ୱ ବ୍ୟଙ୍ଗ ବିଦ୍ରୂପ ଶବ୍ଦରେ ଲେଖିଲେ —

କବିର କାମ ଯା ଇଚ୍ଛା ତା ହେଉ, କବି ବୋଲି ନାମଟେ ପାଇଲେ ହେଲା । କବିମାନଙ୍କ ମଧ୍ୟରେ ନାନା ପ୍ରକାର କବି ଦେଖା ଯାନ୍ତି — ପଢ଼ାଶୁଣା କବି, ଦେଖାଶିଖା କବି, ଘେରି କବି, ଉଧାରି କବି, କାଳବାସୀ କବି, ନଗଦ କବି, ଭଣ୍ଡା କବି, ଗଣତି କବି ଇତ୍ୟାଦି କବିଙ୍କର କାବୁ କୁବୁ ରବରେ ଉତ୍କଳର କଳ ଧ୍ୱନି ଚତୁର୍ଦ୍ଦିଗରେ ନିନାଦିତ ହେଲାଣି ।

କବି ସ୍ୱଭିମାନୀ ହେବା ଦରକାର । ତାର ଜନ୍ମ ଘଟିପରି ପରର ପଦଲେହନ କରି, ତୋଷାମଦ କରି ଜୀବନଯାପନ କରିବା ନୁହେଁ ବରଂ ଏକ ମହାନ ସତ୍ୟର ଉଦ୍‌ଘାଟନ କରିବା । କିନ୍ତୁ ଛାର କିଛି ଟଙ୍କା ପାଇଁ ଯେଉଁଠି କବି ସମାଜର ସତ୍ୟକୁ ଲୁଚାଇ ମିଥ୍ୟାର ଆଶ୍ରୟ ନେବାକୁ ପଛାଏ ନାହିଁ, ସେ ପ୍ରକାର କବିଙ୍କୁ ସେ ଧିକ୍କାର କରିଛନ୍ତି । କବି ଓ କବିତାର ଏ ପ୍ରକାର ଶୋଚନୀୟ ଅବସ୍ଥାରେ

ସେ ମର୍ମାହତ ହୋଇ ଅଶ୍ଳୀଳ, ଅସାହିତ୍ୟ ଓ ଅକବିତାର କର୍କଶ ଆକ୍ରମଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ସେ ବଜ୍ର ଗମ୍ଭୀର ଶବ୍ଦରେ କହି ଉଠିଛନ୍ତି —

କବିତାର ସ୍ୱର୍ଗୀୟ ମାଧୁରୀ; ଦୁଃଖର ବିଷୟ, ଆଜି ପ୍ରତାରଣା ବ୍ୟବସ୍ଥାରେ ପରିଣତ ହୋଇଛି । ଯାହାର ସୁକବିତା ଥାଏ ତାହାର ଅନ୍ୟ ପାର୍ଥୀବ ବିଭବରେ କି ପ୍ରୟୋଜନ ? କିନ୍ତୁ କବିମାନେ ଟଙ୍କ ଭିକ୍ଷା ପାଇବା ନିମନ୍ତେ ପ୍ରଶଂସାଜୀବୀ ଧନୀମାନଙ୍କ ଦ୍ୱାରେ ଶତଶଃ ମିଥ୍ୟା ଢାଳିଦେଇ ଯାଆନ୍ତି··· ରତ୍ନାନ୍ୱିତା ବାର ବଧୂଙ୍କୁ ଦେଖି କୁଳାଙ୍ଗନା କି କୁଳଟା ହେବାକୁ ଚାହେଁ ?

ବିନା ଆଶ୍ରୟରେ କବିତା ବଞ୍ଚି ପାରେ ନାହିଁ ବୋଲି କଥା ଅଛି । ତେବେ ମିଥ୍ୟାର ପ୍ରଶ୍ରୟ ଦେବା କି କବିତାର ଆଶ୍ରୟ ? ଏହି ଆଶ୍ରୟ ନ ପାଇଲେ କି ସୁ କବିତା ଗୁଡ଼ିକ ସାହିତ୍ୟିକ ଭଣ୍ଡାରରେ ତିଷ୍ଠି ପାରିବ ନାହିଁ ?

ସଂସ୍କାରକ କବି ସଂସ୍କାର ଧର୍ମୀ ନିଷ୍ଠା ସହ ସାହିତ୍ୟ ସାଧନା କରିବାକୁ ସେ ଆହ୍ୱାନ କରନ୍ତି । ତାଙ୍କର ନିର୍ଭିକ ନିରପେକ୍ଷ ବାସ୍ତବ ଚିନ୍ତାଧାରାର ଧରାତଳେ ମଣିଷ ଝଡ଼ଝଞ୍ଜାର ସମ୍ମୁଖୀନ ହେଲେ ମଧ୍ୟ ସେ ବିନାଶ ହୋଇ ଯାଏ ନା, ଏଇଥି ପାଇଁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ବୁଟିଆ କାରବାର କରୁଥିବା ଘଟପର ସ୍ୱାର୍ଥପର ଜହ୍ଲାଦ ବଣିକମାନେ ଅପସରି ଯିବାକୁ ଏବଂ ବିଶୁଦ୍ଧ ସାହିତ୍ୟ ସୃଷ୍ଟି ପାଇଁ ସୃଜନଶୀଳ ନିର୍ଭିକ ଲେଖକଙ୍କୁ ଅଗ୍ରାଧିକାର ଦେବାକୁ ସେ ସର୍ବଦା ଆହ୍ୱାନ କରିଛନ୍ତି । ତେଣୁ ସେହି 'ସଂସ୍କାରକ'ର

ଅନ୍ତରାଳରେ ତାଙ୍କ ଦିବ୍ୟ ଦୃଷ୍ଟି ମାନବ ସମାଜର ଅନ୍ଧମିକା ପୂର୍ଣ୍ଣ ଚିତ୍ର ଦେଖାଇ ଦେବାକୁ ପନ୍ନାଇ ଯାଇ ନାହିଁ ।

ଓଡ଼ିଶାର ଦୁର୍ଦ୍ଦଶା, ଏଠାରେ ପୂଜ୍ୟ ପୂଜାର ବ୍ୟତିକ୍ରମ ହୋଇଛି । ବଣଫୁଲ ବଣର ଫୁଟି ଝଡ଼ି ଗଲେ ମଧ୍ୟ ତାର ମୂଲ୍ୟ ସଭ୍ୟତାର ପ୍ଲାଷ୍ଟିକ୍ ଫୁଲଠୁ ଅତି ଉଚ୍ଚରେ । ଶ୍ରୀବତ୍ସ ପଣ୍ଡା ଆଜି ନାହାନ୍ତି । କର୍ପୁର ଉଡ଼ିଯାଇଛି କିନ୍ତୁ କନାରୁ ଗନ୍ଧ ଯାଇ ନାହିଁ ।

ସମୟ ଆସିଛି ଆମେ ଆମର ଭକ୍ତି ଓ ଶ୍ରଦ୍ଧାର ହୃଦୟ ଉପହାର ତାଙ୍କର ଏ ମଧୁର ସ୍ମୃତି ଦିବସରେ ତାଙ୍କୁ ଅର୍ପଣ କରିବା । ସେ ଯେଉଁ ଯଜ୍ଞ ଆରମ୍ଭ କରିଥିଲେ । ସେ ଯଜ୍ଞର ପୂର୍ଣ୍ଣାହୁତି ଆମକୁ ହିଁ କରିବାକୁ ହେବ । ସମୟ ତାଙ୍କର ସୃଷ୍ଟିକୁ ନଷ୍ଟ କରି ପାରିବନି ।

ଆଜିର ଜାତୀୟ ଅଭ୍ୟୁଦୟର ଅରୁଣ ପ୍ରଭାତର ହେ ଭାରତର ନବ ଜାଗ୍ରତ ତରୁଣ ସମାଜ ! ଦେଖ, ତୁମେ ଆଜି ଏପରି ଏକ ଯୁଗରେ ପାଦ ଦେଇଛ ଯେଉଁ ଯୁଗ ତୁମ ପାଇଁ କିଛି ରଖି ନାହିଁ । ଆର୍ଯ୍ୟ ସଂସ୍କୃତି ଆଜି ଭୂଲୁଣ୍ଠିତ, ସତ୍ୟ ଆଜି ପରାଜିତ । ଏଣୁ ପ୍ରସ୍ତୁତ ହୁଅ, ଶ୍ରୀବତ୍ସ ପଣ୍ଡା ଯେଉଁ କ୍ରାନ୍ତିର ପଥ ଆମ ପାଇଁ ଖୋଲି ଦେଇଛନ୍ତି ସେ ପଥରେ ଚାଲି ଆମେ ଆମ ସମାଜର ସଂସ୍କାର କରିବା ତାହାହିଁ ହବେ ସଂସ୍କାରକ ଶ୍ରୀବତ୍ସ ପଣ୍ଡାଙ୍କର ଜୀବନାଦର୍ଶ ଥିଲି ।

॥ ସତ୍ୟମେବ ଜୟତେ ॥

ଉମେଶ ପ୍ରସାଦ ଏମ୍. ଏ.
ଇଂରାଜୀ ବିଭାଗ
ଶ୍ରୀ ଚୈତନ୍ୟ କାଙ୍ଗ୍ରି ବିଶ୍ୱବିଦ୍ୟାଳୟ
ହରିଦ୍ୱାର

# ଭୂମିକା

•

ଜୀବନୀ ଏକା ପ୍ରକୃତ ଇତିହାସ । ଜୀବନୀରୁ ଇତିହାସ ସଙ୍କଳିତ ହୁଏ । ଯେଉଁ ଲୋକର, ସମାଜର ତଥା ଜାତିର ଜୀବନୀ ନାହିଁ, ତାହାର ଜୀବନ ନାହିଁ ବୋଲିବାକୁ ହେବ । ଜୀବନୀ ନିଜର ଶିକ୍ଷା ସଙ୍ଗେ ସଙ୍ଗେ ବନ୍ଧୁ ଲୋକର ଏବଂ ଭାବି ବଂଶଧର ମାନଙ୍କର ଶିକ୍ଷା ମିଳେ । ଜୀବନୀରେ ଜୀବନ ଚରିତ ବର୍ଣ୍ଣିତ ହୋଇ ଥାଏ ଜୀବନ ସହିତ ସମସ୍ତ ବିଦ୍ୟା, ଜ୍ଞାନ, ବିଜ୍ଞାନ, ଶିଳ୍ପ, ଧର୍ମ, କର୍ମ ଇତ୍ୟାଦିର ଘନିଷ୍ଠ ସମ୍ବନ୍ଧ । ଜୀବନହୀନ ବ୍ୟାପାର ବ୍ୟର୍ଥ, ଯେହେତୁ ତାହା ସତ୍ୟ ନୁହେଁ, ପରିଣାମରେ ଫଳପ୍ରଦ ହୁଏ ନାହିଁ । ଜୀବନ ଚରିତ ହିଁ 'ଜୀବନ ବିଜ୍ଞାନ,' ପ୍ରାଣୀମାନଙ୍କର ଜୀବନ ବିଜ୍ଞାନ ଜାଣିବା କର୍ତ୍ତବ୍ୟ । ଅତଏବ ଜୀବନୀ ଲେଖନ ଯେପରି ଆବଶ୍ୟକ ତାହାର ପଠନ ମଧ୍ୟ ନିଶ୍ଚିତମତେ କର୍ତ୍ତବ୍ୟ ।

ଅନ୍ୟ ଲୋକରତ ଜୀବନୀ ଲେଖିବା ଅଲଗା କଥା କିନ୍ତୁ ପ୍ରତ୍ୟେକ ଲୋକ ନିଜର ଆତ୍ମଚରିତ ଲେଖିବା ଉଚିତ । ଯେଉଁ-ମାନେ ଲେଖିପଢି ଜାଣନ୍ତି ନାହିଁ ସେମାନେ ଆପଣା ଜୀବନ ଚରିତ ଲେଖି ରଖି ନପାରନ୍ତି; କିନ୍ତୁ ପ୍ରତ୍ୟେକ ଶିକ୍ଷିତ ଲୋକର ଯେଥି ଜୀବନ ଚରିତ ଲେଖି ଲୋକରେ ପ୍ରକାଶ କରିବା କର୍ତ୍ତବ୍ୟ ଜୀବନୀ ଲିଖନରେ ନିଜର ସଂଶୋଧନ ଏବଂ ବହୁ ଲୋକର ବହୁ ଉପକାର

ହୁଏ । ଯେଉଁମାନେ ନିଜର ଲିଖିତ ଜୀବନୀ ଛପାଇ ଦେଇ ଲୋକରେ ପ୍ରକାଶ କରି ପାରନ୍ତି ନାହିଁ, ସେମାନେ କାଗଜରେ ଲେଖି ରଖିଥାନ୍ତି, ଚିନ୍ତା ନାହିଁ, ଭବିଷ୍ୟତରେ କେବେ ତାହା ଅବଶ୍ୟ ପ୍ରକାଶିତ ହେବ ।

ଜୀବନ ଅଟେ ସତ୍ୟ ଶାଶ୍ୱତ, ଅତଏବ ଜୀବନୀଟା ସତ୍ୟପୂର୍ଣ୍ଣ ହେବା ଆବଶ୍ୟକ । ମିଥ୍ୟାପୂର୍ଣ୍ଣ ଜୀବନୀ ଅଟେ ବୃଥା ଗଳ୍ପ ବା କାଳ୍ପନିକ ଉପନ୍ୟାସ ମାତ୍ର । ତଦ୍ଵାରା ଲୋକର ବେଶୀ ଲାଭ ହୁଏ ନାହିଁ ବରଂ କ୍ଷତିର ସମ୍ଭାବନା । ଯାହାର ସତ୍ୟଭିତ୍ତି ନାହିଁ ତାହାର ଅସ୍ତିତ୍ୱ ନାହିଁ, ପ୍ରୟୋଜନ ନାହିଁ; ସୌନ୍ଦର୍ଯ୍ୟ ନାହିଁ, ମାଧୁର୍ଯ୍ୟ ନାହିଁ, ପୁଣି ତାହା ମାନବତା ବିଜ୍ଞାନ ବା ଧର୍ମ କିଛି ହୋଇ ନପାରେ ।

ସତ୍ୟ ଯଦିଓ ବହୁ ଲୋକ ଆପଣାର ଦୋଷ ପ୍ରକାଶ କରନ୍ତି ନାହିଁ । ସେମାନେ ଆପଣା ଜୀବନର କେତେକ ଘଟଣା ପ୍ରକାଶ ନ କଲେହେଁ ଆପଣାର ଭଲ କଥା, ଧର୍ମକଥା ଏବଂ ପ୍ରଶଂସାର କଥା ଗୁଡ଼ିକ ତ ଅବଶ୍ୟ ପ୍ରକାଶ କରନ୍ତେ, ତଦ୍ଵାରା ମଧ୍ୟ ଲୋକର ବହୁ ଉପକାର ହେବ, କିନ୍ତୁ ଯେଉଁମାନେ ଇହ ଲୋକର ନିନ୍ଦାକୁ ଡରି ଆପଣାର ଦୋଷ ଗୁଡ଼ିକୁ ଗୋପନ କରି ରଖନ୍ତି, ପ୍ରକାଶ କରି ପାରନ୍ତି ନାହିଁ ତେବେ ସେମାନେ ଆପଣା ଜୀବନୀ ଲେଖି ରଖିଥିଲେ ସେମାନଙ୍କ ବିୟୋଗ ପରେ ସେମାନଙ୍କ ଜୀବନୀ ପ୍ରକାଶିତ ହୋଇ ପାରେ । ସେତେବେଳେ ସେମାନଙ୍କର କୌଣସି ଗ୍ଲାନି ବା ମନସ୍ତାପର ଅବକାଶ ନଥିବ, ଅତଏବ ପ୍ରତ୍ୟେକ ଶିକ୍ଷିତ ଲୋକ ଓ ଲେଖି ପଢ଼ି ଜାଣିଥିବା ଲୋକ ନିଜର ଜୀବନୀ ଲେଖି ରଖିଥିବା ଉଚିତ ।

କେହି ବା କହି ପାରନ୍ତି ଯେ ଲୋକ ଶିକ୍ଷାପ୍ରଦ ବସ୍ତୁଜନକ କୌଣସି ବିଶେଷଚିନ୍ତା, କର୍ମାନୁଷ୍ଠାନ ବା ଘଟଣାବଳୀ ନଥିଲେ ସାଧାରଣ ମନୁଷ୍ୟର ଆହାର, ନିଦ୍ରା, ମୈଥୁନ, ଭ୍ରାନ୍ତି, ଆଶଙ୍କା ଇତ୍ୟାଦି ଜାନ୍ତବ କ୍ରିୟାକଳାପ ପ୍ରକାଶରେ କାହାର ବା କି ପ୍ରୟୋଜନ ହୋଇପାରେ । କୌଣସି ଚିନ୍ତା, କର୍ମ ବା ଘଟଣାବଳୀ ଯେତେ ନଗଣ୍ୟ ହେଉ ପଛେ ଯଦି ସତ୍ୟ ପୂତ ହୋଇଥାଏ, ତେବେ ତାର ମହିମା ଅଛି । ସତ୍ୟହିଁ ଶିକ୍ଷା, ସତ୍ୟହିଁ ଦୀକ୍ଷା, ସତ୍ୟହିଁ ପରମାତ୍ମା ପରମେଶ୍ୱରଙ୍କର ପରମ ଐଶ୍ୱର୍ଯ୍ୟ । ଜୀବନର ଘଟଣାବଳୀ ଯେତେ ସାମାନ୍ୟ ବା ନଗଣ୍ୟ ହେଉ ଅଥବା ନିନ୍ଦନୀୟ ହେଉ ଯଦି ସତ୍ୟମୂଳକ ତେବେ ଅବଶ୍ୟ ମାନବ ପକ୍ଷରେ ଶିକ୍ଷାପ୍ରଦ ହେବ ।

ଶ୍ରୀବତ୍ସ ପଣ୍ଡା

ବନ୍ଧନ ୧୯୮୪-ଭଦ୍ର

# ଶ୍ରୀବତ୍ସ ପଣ୍ଡା

ଘେନ ଆହେ ଆର୍ଯ୍ୟ ଘେନ ମୋର ନମସ୍କାର,
ଆଜି କେହି କରୁ ଅବା ନ କରୁ କରେଁ ମୁଁ ନମସ୍କାର ।

ସଂସାର ପଥେ ସାଥୀ ଯେତକ ଥିଲେ ଆପଣାର
ଏକ ଏକ ଗଲେ ଚାଲି ରହିଅଛୁ ଅପେକ୍ଷି ଆହ୍ୱାନ କାହାର ।

ବିଶ୍ୱାସୀ ତୁମେ ଏକ ବ୍ରହ୍ମର ବିଶ୍ୱାସରେ ରହିଅଛୁ ବସି
ହୋମାନଙ୍କ ଜାକି ଆହ୍ୱାନୁଛି ମନ୍ତ୍ର ଫୁଙ୍କି ଏହି ଦେଖ ହସି ।

ପୁଣି ଉଠିବ କେବେ—ଆର୍ଯ୍ୟ ବଡ଼ ହେବ ପୁଣି
ଅନ୍ୟାନ୍ୟ ଅତ୍ୟାଗ୍ରର ସମାନ ଅନର୍ଗଳତା ସବୁହେବ ଛିନ୍ନଭିନ୍ନ ପୁଣି

ନିଜ ଜୀବନର ଯୌବନର ପ୍ରୌଢ଼ର ଗତି ପଥ ଭାବ
ବସି ଅଛ ସୁଖେ ଦୁଃଖେ ଘେନ ମୋର ଅର୍ଘ୍ୟ ଏହିକ୍ଷଣି ।

(ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ 'କବିତା-ମଞ୍ଜରୀ'ରୁ ଉଦ୍ଧୃତ)

———

# --ବଂଶ ପରିଚୟ

ଉତ୍କଳ ଦେଶର ଦକ୍ଷିଣାଞ୍ଚଳରେ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଘୁମୁସର ତାଲୁକାରେ ମନ୍ଦାର ଗ୍ରାମରେ ଗୋବର୍ଦ୍ଧନ ପଣ୍ଡା ନାମକ କେହୁ ବ୍ୟକ୍ତି ପ୍ରଥମେ ଆସି ନିବାସ କଲେ ।

-- •

ଗୋବର୍ଦ୍ଧନ ପଣ୍ଡାଙ୍କ ୩ ପୁତ୍ର:— ୧- ଶିବ ପଣ୍ଡା ୨· ବୈକୁଣ୍ଠ ପଣ୍ଡା ୩-ରାମ ପଣ୍ଡା । ଶିବପଣ୍ଡାଙ୍କର ହେଲେ ୨ ପୁତ୍ର, ଧର୍ମ ଓରଫେ ଦାଶରଥି ଓ ପ୍ରହ୍ଲାଦ । ବୈକୁଣ୍ଠପଣ୍ଡାଙ୍କର ୪ ପୁତ୍ର ଥିଲେ । (୧) ନୀଳମଣି (୨) ବ୍ରଜସୁନ୍ଦର (୩) ବାସୁଦେବ (୪) କ୍ଷେତ୍ରବାସୀ । ଧର୍ମପଣ୍ଡାଙ୍କ ଧର୍ମପତ୍ନୀଙ୍କ ତୃତୀୟ ଗର୍ଭରୁ ମୋହନର ଜନ୍ମ; ନାମ ଶ୍ରୀବତ୍ସ । ପ୍ରହ୍ଲାଦ ପଣ୍ଡାଙ୍କର ୨ ପୁତ୍ର (୧) ଗଙ୍ଗାପାଣି (୨) କାଶୀନାଥ । ବ୍ରଜସୁନ୍ଦର ପଂଡାଙ୍କର ୨ପୁତ୍ର ନାରାୟଣ ଓ ଦଶନ୍ଦର । କ୍ଷେତ୍ରବାସୀ ପଣ୍ଡାଙ୍କର ୨ ପୁତ୍ର ଜାତ ହୋଇଥିଲେ । ସେମାନଙ୍କର ବାଲ୍ୟାବସ୍ଥାରେ ମୃତ୍ୟୁ ହେଲା । ନୀଳମଣି ପଣ୍ଡା ଓ ବାସୁଦେବ ପଂଡା ନିଃସନ୍ତାନ ଥିଲେ । ନୀଳମଣି ପଣ୍ଡାଙ୍କର ଦତ୍ତପୁତ୍ର ହେଲେ ନାରାୟଣ ପଂଡା । ବାସୁଦେବ ପଂଡାଙ୍କର ଦତ୍ତପୁତ୍ର ହେଲେ କାଶୀନାଥପଣ୍ଡା । ମୋହନର ପିତା ଧର୍ମ ପଣ୍ଡାଙ୍କ ଦ୍ୱିତୀୟାପତ୍ନୀଙ୍କ ଗର୍ଭରେ ଜାତ ହେଲେ ନରସିଂହ ପଣ୍ଡା, ପୁଣି ଅପୁତ୍ରକ କ୍ଷେତ୍ରବାସୀ ପଣ୍ଡାଙ୍କ ପାଇଁ ସେ ଦତ୍ତ ପୁତ୍ରରୂପେ ଗୃହୀତ ହେଲେ । (ବଂଶଲତା ପରପୃଷ୍ଠାରେ ଦେଖନ୍ତୁ)

ଆମ୍ଭମାନଙ୍କର ପିତୃଦେବ ଧର୍ମ ପଂଡାଦି ଛଅଭାଇ ଶକ୍ତିଶାଳୀ ଓ କାର୍ଯ୍ୟକୁଶଳ ଥିଲେ । ଧର୍ମ ପଂଡା ଅଧିକ ଧାର୍ମିକ, ଶାନ୍ତପ୍ରକୃତିକ, ପରିଶ୍ରମୀ ଓ କଷ୍ଟସହିଷ୍ଣୁ ଥିଲେ । ନୀଳମଣି ପଣ୍ଡା ଓ ବାସୁଦେବ ପଣ୍ଡା ଅଧିକ ଧୈର୍ଯ୍ୟଶାଳୀ ଓ ଉପାର୍ଜ୍ଜନପଟୁ ଥିଲେ । ବ୍ରଜସୁନ୍ଦର ପଂଡା ଅଧିକ ବୁଦ୍ଧିମାନ୍ ବୋଲି ଲୋକେ କହନ୍ତି । ପ୍ରହ୍ଲାଦ ପଣ୍ଡା ଓ କ୍ଷେତ୍ରବାସୀ ପଣ୍ଡା ଅଳ୍ପ ବୟସରେ ପରଲୋକ ପ୍ରାପ୍ତ ହୋଇଥିଲେ । ଜ୍ୟେଷ୍ଠଭ୍ରାତା ଧର୍ମ ପଣ୍ଡା ଅନ୍ୟ ସବୁ ଭାଇମାନଙ୍କଠାରୁ

## ଗୋବର୍ଦ୍ଧନ ପଣ୍ଡା

- ଶିବ ପଣ୍ଡା
  - ଧର୍ମ ଜଗମ୍ ଦାଶରଥି ( ୨ ପତ୍ନୀ ଥିଲେ )
    - ପ୍ରଥମଠାରୁ
      - ଝିଅ
      - ଝିଅ
      - ଗୀରସ୍ର
        - କ୍ଷେତ୍ରବାସୀଙ୍କ ଦତ୍ତପୁତ୍ର ହେଲେ
    - ଦ୍ୱିତୀୟଠାରୁ
      - ନରସିଂହ ପଣ୍ଡା
  - ପ୍ରହରାଜ
    - ଗଙ୍ଗାପାଣି
    - କାଶୀନାଥ (ଦତ୍ତପୁତ୍ର ହେଲେ)
- ବୈକୁଣ୍ଠ ପଣ୍ଡା
  - ନୀଳମଣି
  - ବ୍ରଜସୁନ୍ଦର
    - ନାରାୟଣ (ଦତ୍ତପୁତ୍ର ହେଲେ)
    - ହରିହର (ଦତ୍ତପୁତ୍ର ହେଲେ)
  - ବାସୁଦେବ
    - କାଶୀନାଥଙ୍କ ଦତ୍ତପୁତ୍ର
  - କ୍ଷେତ୍ରବାସୀ
    - ପ୍ରଥମର ମୃତ୍ୟୁ
    - ଦ୍ୱିତୀୟରେ ମୃ
    - ଗୀରସ୍ର ଦତ୍ତପୁତ୍ର ହୋଇ ଆସିଲେ
- ରାମ ପଣ୍ଡା

ଅଧିକ କାଳ ବଞ୍ଚିଥିଲେ । ଅନ୍ୟ ସବୁ ଭାଇମାନେ ୭୦।୮୦ ବର୍ଷ ବୟସରେ ମୃତ ହେଲେ । ସବ ଶେଷରେ ୭୫ ବର୍ଷ ବୟସରେ ୧୮୯୭ ଖ୍ରୀଷ୍ଟାବ୍ଦରେ ଧର୍ମ ପଣ୍ଡା ପରଲୋକ ପ୍ରାପ୍ତ ହେଲେ । ବାସୁଦେବ ପଣ୍ଡା ତାହାଙ୍କ ସମୟରେ ଅତ୍ୟନ୍ତ ସୁବିଖ୍ୟାତ ଥିଲେ । ସେ ଘୁମୁସର ରାଣୀଙ୍କର ବ୍ୟବହାର କରୁଥିଲେ ଓ ତାଙ୍କଠାରୁ ପଞ୍ଚଗୋଷ୍ଠୀ ଉପାଧି ପାଇଥିଲେ । ଘୁମୁସର ତାଲୁକାରେ ମନ୍ଦାର ଗ୍ରାମର ପଣ୍ଡାଘର ନାମରେ ଏହି ପରିବାର ଅତ୍ୟନ୍ତ ବିଖ୍ୟାତ, ଧନବନ୍ତ ଓ ସମ୍ଭ୍ରାନ୍ତ ଥିଲା । ତିନି ପୁରୁଷରୁ ଏହି ପରିବାର ଏକାନ୍ନବର୍ତ୍ତୀ ଥିଲା ।

ଆମର ଦେହକରେ ଆମ୍ଭେମାନେ ବିଭକ୍ତ ହେଲୁ । (୧) ନାରାୟଣ ପଣ୍ଡା (୨) ଗଙ୍ଗାପାଣି ପଣ୍ଡା (୩) ହରିହର ପଣ୍ଡା (୪) ଶ୍ରୀବତ୍ସ ପଣ୍ଡା (୫) କାଶୀନାଥ ପଣ୍ଡା (୬) ନରସିଂହ ପଣ୍ଡା ଏହି ଭଳି ୬ଟି ପରିବାର ଆମ୍ଭମାନଙ୍କର ହେଲା ।

## —ଶୈଶବ—

୧୭୯୧ ଶକାବ୍ଦ କନ୍ୟା ୧୬ ଦିନ ଆଶ୍ୱିନ କୃଷ୍ଣ ଏକାଦଶୀ ଶୁକ୍ରବାର ଦିନ ପିତା ଧର୍ମ ପଣ୍ଡାଙ୍କ ଔରସରେ ମାତା ରାଧାଦେବୀଙ୍କ ଗର୍ଭରୁ ମୋର ଜନ୍ମ । ୨୨ ବର୍ଷ ପର୍ଯ୍ୟନ୍ତ ମାତା ଗର୍ଭଧାରଣ ନ କରିବାରୁ ମୋର ପିତାମାତା ସନ୍ତାନ ପ୍ରାପ୍ତି ଆଶା ଛାଡ଼ିଥିଲେ । ଦୈବାନୁକୂଳରୁ ପ୍ରଥମେ ଦୁଇଟି କନ୍ୟା ଓ ତତ୍ପରେ ମୋର ଜନ୍ମ ହେଲା । ପୁତ୍ର ସନ୍ତାନ ଆଶାରେ ମୋର ପିତା ବ୍ରାହ୍ମଣ ଓ ବୈଷ୍ଣବ ମାନଙ୍କ ଦ୍ୱାରା ବହୁଧର୍ମ କର୍ମ କରାଇଥିଲେ ଓ ବହୁ କାୟକ୍ଳେଶ ସହ୍ୟ କରି-ଥିଲେ । ସେମାନଙ୍କର ଏହିଭଳି ତପସ୍ୟାବଳରୁ ମୋର ଜନ୍ମ ବୋଲି ଲୋକେ କହନ୍ତି । ମୋର ମା ୨୨ ବର୍ଷ ପରେ ମୋତେ ଗର୍ଭରେ ଧାରଣ କରିଥିବା ହେତୁ କେତେ ଲୋକ ମୋତେ ବାଇଶିବର୍ଷିଆ ବୋଲି ବି କହୁଥାଆନ୍ତି । ମୋତେ ତିନି ବର୍ଷ ବୟସ ବେଳେ ମୋର ମା'ଙ୍କ କାଳ ହୋଇଗଲା । ସେହିଦିନଠାରୁ ମୁଁ ପିତୃକର୍ତ୍ତୃକ ଲାଳିତ ପାଳିତ ହୋଇ ଆସିଲି । ଫୁଲ ନାନୀ ନାମରେ ମୋର ଜଣେ ଖିଦମତୀ ଥାଆନ୍ତି । ସେ ମୋର ରକ୍ଷଣାବେକ୍ଷଣରେ ବେଶ୍ ପ୍ରାଣପଣେ ଲାଗି-ଥାଆନ୍ତି ।

## —ବିଦ୍ୟାଶିକ୍ଷା—

ଆମ୍ଭ ଗ୍ରାମରେ ଗ୍ରାମ୍ୟଶିକ୍ଷକ ଅବଧାନଙ୍କର ଯେଉଁ ଚାଟଶାଳୀ ଥିଲା ତହିଁରେ ମୋର ଅଧ୍ୟୟନ ଆରମ୍ଭ ହେଲା । ଚାଟଶାଳୀ ନିୟମ ଅନୁସାରେ କୋଡ଼ି, ନବ୍ବ ଶନବ୍ବ, ପଞ୍ଚବଶିକ, ନବ୍ବବଶିକ ଇତ୍ୟାଦି ଶିଖିଲି । ଚାଟଶାଳୀରେ ହେଉ ଅଥବା ବାହାରେ ହେଉ ଚାଟଶାଳୀର ପିଲା ବା ଛାତ୍ରମାନେ ଅବଧାନଙ୍କ ଜଣା ଶୁଣାରେ କିଛି କ୍ରୀଡ଼ା କୌତୁକ, ଆମୋଦ ପ୍ରମୋଦ କରିପାରନ୍ତି ନାହିଁ । ପିଲାମାନେ ଚାଟଶାଳୀକୁ କାରାଗୃହ ଓ ଅବଧାନଙ୍କୁ ଯମପରି ମନେ କରନ୍ତି । ଚାଟ ପିଲାମାନଙ୍କ ସଙ୍ଗରେ ପଡ଼ି କେତେ ଦିନ କେତେକ ପ୍ରକାର ଦୁଷ୍ଟାମି କରିଥିଲି । ଦିନକର କଥା ମୋର ମନେ ପଡ଼ୁଛି । ଯୋଗୀ ନାମରେ ଗୋଟିଏ ପିଲା ଥରେ ଗୋଟିଏ ଅରଖଫଳ ଆଣି ଆମ୍ଭମାନଙ୍କୁ ତାହା ଖିରି କଦଳୀ ବୋଲି କହିଲା ଏବଂ ତାହା ଭକ୍ଷଣ କଲେ ଅବଧାନେ ମରିଯିବେ ବୋଲି ମଧ୍ୟ କହିଲା । ଆସନ୍ତାର ଦିନରେ ଖିରି କଦଳୀ ଦେଇ ଅବଧାନଙ୍କୁ ଖୁଆଇଦେବା ସ୍ଥିର ହେଲା । ଅନ୍ୟ କେହି ଛାତ୍ର ପ୍ରସ୍ତାବ ଦେଲା ଯେ ରାତ୍ରିବେଳେ ଘର ଉପରେ ଛଲ କଣାକରି ଗୋଟିଏ ଶାବଳ ପକାଇଦେବା ଯେ ଅବଧାନେ ମରିଯିବେ ।

କ୍ଷେତ୍ରପାଳ ନାମରେ ଜଣେ ସହପାଠୀ ମୋର ସଙ୍ଗାତ ହୋଇଥିଲେ । ସଙ୍ଗାତଠାକୁ ଉକ୍ତ କୁମନ୍ତ୍ରଣା ବିଷୟ ଯେନ ମୁଁ ଗୋଟିଏ ପତ୍ର ଲେଖିଥିଲି । ଏହି ଚିଠି ଖଣ୍ଡିକ ଧରାପଡ଼ି ଯିବାରୁ ଆମ୍ଭମାନଙ୍କର ସବୁ କୁମନ୍ତ୍ରଣା ପଦାରେ ପଡ଼ିଗଲା । ଯେଉଁ ପିଲା ଆପଣା ଘରୁ ଆଖୁର, ଆମ୍ବୁଲ, ଆଳୁ, ବାଇଗଣ ଇତ୍ୟାଦି ଲୁଚାଇ ଚୋରାଇ ଆଣି ଅବଧାନଙ୍କୁ ଦେଉଥାଏ, ଅବଧାନଙ୍କର ତା'ପ୍ରତି ଟିକିଏ ଦୟାଦୃଷ୍ଟି ବା ପକ୍ଷପାତ ଥାଏ । ଏହିପରି କିଛିକାଳ ଚାଟଶାଳୀ ଶିକ୍ଷାପରେ ରସୁଲକୁଣ୍ଡାଠାରୁ ତେଲୁଗୁ ଏବଂ କିଛି ଇଂରାଜୀ ଜାଣିଥିବା ଜଣେ ବ୍ୟକ୍ତି ମାଷ୍ଟରରୂପେ ନିଯୁକ୍ତ ହୋଇ ଆମ୍ଭମାନଙ୍କୁ କିଛି ଇଂରାଜୀ ଓ ତେଲୁଗୁ ଶିକ୍ଷା ଦେଉଥିଲେ । ତାଙ୍କ ନାଁ ମନପାନ ରାମମୂର୍ତ୍ତି ପଟ୍ଟନାୟକ । ତେଲୁଗୁହିଁ ଏହି ଓଡ଼ିଶା ଦେଶର ଗଞ୍ଜାମରେ ରାଜଭାଷା ରୂପେ ଗୃହୀତ ହୋଇଥିଲା । କେହି ଜଣେ ତେଲୁଗୁରେ ଦସ୍ତଖତ କରିପାରିଲେ ଆପଣାକୁ ଶିକ୍ଷିତ,

ଉପଯୁକ୍ତ ନା ବଡ଼ଲୋକ ବୋଲି ମନେ କରୁଥିଲି । ପିତାମାତା ନିଜର ପିଲାଙ୍କୁ ଗୃହଅକ୍ଷର ତେଲୁଗୁ ଶିଖାଇ ଦେବାକୁ ମନ କରିଥାଆନ୍ତି । ଇଂରାଜୀ ଲେଖି ପଢ଼ି ଜାଣିଲେ ତ ଆହୁରି ବଡ଼ କଥା, କିନ୍ତୁ ଇଂରାଜୀପଢ଼ା ହେବାକୁ ସାହସ କରିପାରନ୍ତି ନାହିଁ ।

ଆମ୍ଭ ଗ୍ରାମ ନିକଟବର୍ତ୍ତୀ ବେଲଗୁଣ୍ଠା ଗ୍ରାମରେ କତିପୟ ସ୍ଥାନୀୟ ଲୋକଙ୍କ ଯତ୍ନରେ ଏକ ଇଂରାଜୀ ସ୍କୁଲ ବସିଲା । ଜଗ ବଲରାମ ଦାସ ନାମକ ଜଣେ ତେଲଙ୍ଗା ଲୋକ ଶିକ୍ଷକ ନିଯୁକ୍ତ ହେଲେ । ଏହି ସ୍କୁଲରେ ମୁଁ ଏକବର୍ଷ ପଢ଼ାଶୁଣା କରିଥିଲି । ମୋହର ଖୁଡ଼ୁତା ଭ୍ରାତା ଭାଇ ଗଙ୍ଗାପାଣି ପଣ୍ଡା ଓ ହରିହର ପଣ୍ଡା ରସୁଲକୁଣ୍ଡା ଯାଇ ସ୍କୁଲରେ ଇଂରାଜୀ ପଢ଼ୁଥିବା ଦେଖି ମୋର ମଧ୍ୟ ସେଠାକୁ ଯାଇ ପଢ଼ିବା ଇଚ୍ଛା ହେଲା । ବିଦ୍ୟା ଶିକ୍ଷାରେ ଲାଭ ଜାଣିପାରି ଯେ ପଢ଼ିବା ଇଚ୍ଛା ଜନ୍ମି ଥିଲା ତାହା ନୁହେଁ, ରସୁଲକୁଣ୍ଡାରେ ପଢ଼ୁଥିବା ଛାତ୍ରମାନେ ଇସ୍ତି ହୋଇଥିବା ଧୋବଲୁଗା, କୋଟ, କୁରୁତା ସିଲାନ୍ତି, ଯୋତା ଲଗାନ୍ତି, ଛତା ଧରନ୍ତି । ଏମାନଙ୍କର ଏହି ବେଶଭୂଷା ଦେଖି ରସୁଲକୁଣ୍ଡା ଯାଇ ପଢ଼ିବା ଇଚ୍ଛା ହେଲା । ପିତାଙ୍କର ଏହି ଇଚ୍ଛା ଥିଲା ଯେ ପୁତୁରାମାନେ ଇଂରାଜୀ ପଢ଼ୁଛନ୍ତି, ମୋ ପୁଅ ମଧ୍ୟ ସେମାନଙ୍କ ସଙ୍ଗେ ପଢ଼ି କିଛି ଇଂରାଜୀ ବିଦ୍ୟା ଶିକ୍ଷା କରୁ । କକେଇମାନଙ୍କ ଅନୁରୋଧରେ ପିତାଙ୍କଠାରୁ ଟଙ୍କା, ପଇସା, ଚାଉଳ, ଡାଲି ଇତ୍ୟାଦି ଧରି ଯାଇ ରସୁଲକୁଣ୍ଡାଠାରେ ପଢ଼ିବାକୁ ଆରମ୍ଭ କଲି ।

୧୮୮୭ ଖ୍ରୀଷ୍ଟାବ୍ଦରେ ମୁଁ ରସୁଲକୁଣ୍ଡା ଯାଇ ଗଭର୍ଣ୍ଣମେଣ୍ଟ ମିଡ଼ିଲ୍ ସ୍କୁଲରେ ତୃତୀୟ ଶ୍ରେଣୀରେ ସର୍ବ ପ୍ରଥମେ ପ୍ରବେଶ କଲି । ସେତେବେଳକୁ ମୋହର ବୟସ ପ୍ରାୟ ୧୭ ବର୍ଷ । ତତ୍ପୂର୍ବରୁ ଉପନୟନବିଧି, ପ୍ରତିମା ପୂଜାଦି ଦୈବୀ କର୍ମରେ ମୋହର ବିଶେଷ ପ୍ରବୃତ୍ତି ଜନ୍ମି ଥିଲା । ଜ୍ୟୋତିଷ ଶାସ୍ତ୍ରୀ ବ୍ରାହ୍ମଣଠାରୁ ଅଭିଧାନରୁ କେତେ ବର୍ଷ ମାତ୍ର ଶିକ୍ଷାକରି ସୂକ୍ତ, ସ୍ତୋତ୍ର, ସନ୍ଧ୍ୟାବନ୍ଦନ ପ୍ରଭୃତି କେତେକ କର୍ମକାଣ୍ଡ ମୁଖସ୍ଥ କରି ନୈମିତ୍ତିକଭାବରେ କାର୍ଯ୍ୟ

କରୁଥିଲି । ଆମ୍ଭ ଘରେ ଜଗନ୍ନାଥ, ରାଧାକୃଷ୍ଣ, ଲକ୍ଷ୍ମୀନାରାୟଣ ଏବଂ ନାନାବିଧ ଶାଳଗ୍ରାମ ଶିଳା ଘେନି ଖଟୁଲିଏ ଥାଆନ୍ତି । ମୁଁ ନିତ୍ୟ ପ୍ରାତଃସ୍ନାନ ସାରି ଏହି ଦେବତାମାନଙ୍କର ସେବାପୂଜା କରି ସ୍ତୁତି ପାଠ ଓ ଜପ ଧ୍ୟାନରେ ଘଣ୍ଟା ସଂଖ୍ୟକ ସମୟ ବ୍ୟୟ କରୁଥାଏ । ସମୟେ ୨ ଯଥା ସମୟରେ ଭୋଜନକୁ ନ ଯାଇ ଜପ ଧ୍ୟାନରେ ବସିଥିବା ଦେଖି କେହି କେହି ଭଉଣୀମାନେ କହୁଥାନ୍ତି, “ଭାତ ଖାଇବାକୁ ନ ଆସି ବୁଢ଼ାଙ୍କ ପରି ବସି କେତେ ଜପ କରୁଅଛୁ” । ସାଧାରଣ ଲୋକଙ୍କର ଧାରଣା ଯେ କେବଳ ବୟୋଧିକ ବୃଦ୍ଧ ଲୋକମାନେ ଜପ ତପ ଇତ୍ୟାଦି ଧର୍ମକାର୍ଯ୍ୟରେ ଲାଗନ୍ତି । ବାଲ୍ୟ ଚାଞ୍ଚଲ୍ୟ ବା ଯୌବନ ମଦରେ ଏହି ନୈଷ୍ଠିକ ଭାବ ବର୍ଦ୍ଧିତ ହୁଏ ନାହିଁ ।

ରତ୍ନବକ୍ରଂନ୍ତୋଠାରେ ଇଂରାଜୀ ସ୍କୁଲରେ ପଢ଼ୁଥିବାବେଳେ ମଧ୍ୟ ବିଦ୍ୟାର ଅଧିଷ୍ଠାତ୍ରୀ ଦେବ ଗଣେଶଙ୍କ ଆରାଧନା ସହ ବନଂଚୁଞ୍ଚ ମନ୍ତ୍ର ଜପ କରୁ-ଥିଲି । ତୃତୀୟ ଶ୍ରେଣୀ ପାଠଆରମ୍ଭଠାରୁ ମିଡ଼ିଲ ସ୍କୁଲ ପରୀକ୍ଷା ପାସ କଲା ପର୍ଯ୍ୟନ୍ତ ନିର୍ବିଘ୍ନରେ ଅବଲୀଳାକ୍ରମେ ବିଦ୍ୟାଶିକ୍ଷା ଚାଲିଲା । ପ୍ରତ୍ୟେକ ଶ୍ରେଣୀରେ ପ୍ରାୟ ସବୁଦିନେ ପ୍ରଥମ ସ୍ଥାନ ପାଉଥାଏ । ପ୍ରତ୍ୟେକ ବର୍ଷର ପରୀକ୍ଷା ଅନ୍ତ ଚିହ୍ନରେ ପାଶ କରି ଅବଶେଷରେ ମିଡ଼ିଲ ସ୍କୁଲ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ କଲି । ସେତେବେଳେ ମୋର ସ୍ମରଣ ଶକ୍ତି ଖୁବ ଭଲ ଥିଲା । ବେଶୀ ନ ପଢ଼ିଲେ ମଧ୍ୟ ଯାହା ଥରେ ପଢ଼ି ଦେଲେ ମନେ ରହିଯାଏ । ଏହା ଦବୁ ବନଂଚୁଣ୍ଡ ମନ୍ତ୍ର ଜପର ପ୍ରଭାବ ବୋଲି ମୋହର ଧାରଣା ଥିଲା । ବାଲ୍ୟାବସ୍ଥାରେ ଅନ୍ୟାନ୍ୟ ମାନସିକ ଚିନ୍ତା ନ ଥିବାରୁ ଏକାଗ୍ରତା ହେତୁ ସ୍ମରଣଶକ୍ତିର ଉତ୍କର୍ଷ ଥାଏ । ଏହି କଥାଟା ସେତେବେଳେ ଜ୍ଞବପାର ନ ଥିଲି ।

ଚସ୍ଲଲକୁଣ୍ଡାଠାରେ ମୋତେ ପୂର୍ଣ୍ଣ ୬ ବର୍ଷ ରହି ବିଦ୍ୟାଶିକ୍ଷା କରିବାକୁ ପଡ଼ିଥିଲା । ଏହି ସମୟ ମଧ୍ୟରେ ମୋର କୌଣସି ଦୁଷ୍ଟାମି ବା ଅସତ୍‌ସଙ୍ଗ ହୋଇନାହିଁ । ଥରେ କୌଣସି ଏକ ବ୍ୟକ୍ତିର ମନ୍ତ୍ରଣାରେ ପଡ଼ି ତାହାଙ୍କ ସଙ୍ଗରେ ଏକ ବେଶ୍ୟା ଘରକୁ ଯାଇଥିଲି । ବେଶ୍ୟା ସହବାସ ଏହାହିଁ ମୋର ପ୍ରଥମଥର । ସେଠାରେ ଭୟ ଓ ଲଜ୍ଜାବଶତଃ ସେହି ଭ୍ରଷ୍ଟା କାମିନୀ କେତେ

ପ୍ରଲୋଭନ ଦେଖାଇଲେ ହେଁ ମୁଁ ଉକ୍ତ ଧାର୍ମିକ କାର୍ଯ୍ୟ ସଞ୍ଚାଳନାରେ କୃତକାର୍ଯ୍ୟ ହୋଇ ନ ପାରି ସେଠାରୁ ବାହାରି ଆସିଥିଲି । ସେହି ଦିବାବଧି ସ୍ତ୍ରୀ ସହବାସରେ କିଛି ସାହାସ ଜନ୍ମିଲା । ଆଉ ଏକ ଦିନ ରସୁଲକୁଣ୍ଡାଠାରୁ ମନ୍ଦିର ଯିବା ମାର୍ଗରେ ଏକ ବ୍ୟଭିଚାରିଣୀ ସ୍ତ୍ରୀର ବଶୀଭୂତ ହୋଇ ମୋହର ସ୍ୱଳନ ଘଟିଥିଲା । ପ୍ରକାଶ୍ୟ ରାଜପଥରେ କଳଙ୍କିନୀ ବେଶ୍ୟାର ଅବସ୍ଥିତ କିପରି ଆପତ୍ତିଜନକ ତାହା ମୋତେ ଏହି ଘଟଣାରୁ ପ୍ରତୀତ ହୁଏ । ଏହି ସ୍ୱଳନ ପରେ ମୁଁ ଅତ୍ୟନ୍ତ ଅନୁତାପ ଭୋଗ କରିଥିଲି ।

## —ବିବାହ—

ମୁଁ ତୃତୀୟ ଶ୍ରେଣୀରେ ପଢ଼ୁଥିବାବେଳେ ପ୍ରାୟ ୧୮ ବର୍ଷ ବୟସ ସମୟରେ ମୋହର ବିବାହ ହୋଇଥିଲା । ଆଠଗଡ଼ ପଲସରି ଗ୍ରାମ ନରହରି ଦାଶଙ୍କ ଏକମାତ୍ର କନ୍ୟା ସହିତ ମୋହର ବିବାହ ହେଲା । ଶ୍ୱଶୁର ଗୃହଠାରୁ ଜୁଆଁଇଁର ଆହାର ବ୍ୟବହାରରେ ମଧ୍ୟ ଲଜ୍ଜା କରିବା ଆମ ସମାଜରେ ଏକ ପ୍ରକାର ଶିଷ୍ଟାଚାର । ଅନେକ ସମୟରେ ଶ୍ୱଶୁରଘରଠାରେ ଜାମାତାକୁ ଆପଣାର ପୂର୍ଣ୍ଣ ଆହାର ନ କରି ଶୀର୍ଣ୍ଣକାୟ ହୋଇ ଘରକୁ ଫେରିବାକୁ ପଡ଼ିଥାଏ । ଏହି ଶିଷ୍ଟାଚାର ପାଳନରେ ମୁଁ କେବେହେଁ ମନୋଯୋଗୀ ନଥାଏ, ମୋହର ପ୍ରୟୋଜନାନୁସାରେ ଆହାର କରିବାକୁ ମୁଁ କିଛିମାତ୍ର ଲଜ୍ଜା ବୋଧ କରୁ ନଥା । ମୋହର ପ୍ରୟୋଜନାନୁସାରେ ଆହାର କରିବାକୁ ମୁଁ କିଛିମାତ୍ର ଲଜ୍ଜା ବୋଧ କରି ନ ଥାଏ । ଆମ ଦେଶରେ ଶାଶୁ ଶ୍ୱଶୁର, ଜୁଆଁଇ ପୁଅକୁ ଝିଅ ଭଳି ପିଅର ଲାଳନ ପାଳନ କରନ୍ତି । ଏମନ୍ତ କି ଅନେକ ସମୟରେ ଅଡ଼ଶିଙ୍କ ପରିମାଣରେ ଝିଅଠୁ ଅଧିକ ଜୁଆଁଇଁ ପୁଅର ଅନିଷ୍ଟ ସାଧନ କରି ଥାଆନ୍ତି । ସମାଜର ସାଧାରଣ ନିୟମାନୁସାରେ ବାଳକ ୧୬ ବର୍ଷରୁ ଅଧିକ ହେଲେ ବୃନ୍ଦାବନର ଟୋକା ଲଖିଁ ହୁଏ । ଜୁଆଁଇଁ ପିଲାଙ୍କି ଯେତେ ମାନ ଦେବ ସେତେ ସୁନ୍ଦର ଦେଖାଯାଏ । ବୟଃପ୍ରାପ୍ତ, ସୁଶିକ୍ଷିତ, କାର୍ଯ୍ୟକ୍ଷମ ଏବଂ ପରିବାର ଭରଣପୋଷଣକ୍ଷମ ପୁରୁଷ ଆଧ ଦ୍ୱାଦଶବର୍ଷୀ କନ୍ୟାର ପାଣି ଗ୍ରହଣ କରି ତାକୁ ସନ୍ତୋଷ

ଆପଣା ଗୃହକୁ ଫେରିଯିବା ଦୃଶ୍ୟଟା ଏହି ହତଭାଗ୍ୟ ବ୍ରାହ୍ମଣ ସମାଜରେ ସ୍ୱପ୍ନରେ ସୁଦ୍ଧା ଦେଖାଯାଏ ନାହିଁ ।

## —ଉଚ୍ଚ ଶିକ୍ଷା—

୧୮୮୯ ଖ୍ରୀଷ୍ଟାବ୍ଦରେ ମୁଁ ମିଡ଼ିଲସ୍କୁଲରୁ ପାସକରି ବ୍ରହ୍ମପୁର ଗଲି । ସେଠାରୁ କଲେଜରେ ପାଞ୍ଚବର୍ଷ ପର୍ଯ୍ୟନ୍ତ ଅଧ୍ୟୟନ କଲି । ଆମ୍ଭେମାନେ ସେତେବେଳେ ବଙ୍କପୁରଠାରେ ବସାକରିଥାଉ । ନର୍ମାଲସ୍କୁଲ ଶିକ୍ଷକ ପଣ୍ଡିତ ଶ୍ରୀଯୁକ୍ତ ଭଗବାନ ରଥ ବଙ୍କପୁର ନିବାସୀ ଓଡ଼ିଆ ଛାତ୍ରମାନଙ୍କର ଅଭିଭାବକ ଥାଆନ୍ତି । ସେ ଓଡ଼ିଆ ସାହିତ୍ୟ ଏବଂ ନାନାବିଧ ନୀତି ଶିକ୍ଷା ଦେଉଥାଆନ୍ତି । ସେ ମହାଶୟଙ୍କଠାରେ ମୁଁ ଆଜୀବନ ଋଣି । ତାହାଙ୍କର ସତ୍‌ଶିକ୍ଷା ମୋହର ମାନସପଟରେ ଚିରକାଳ ଅଙ୍କିତ ରହି ମୋହର ଜୀବନ ଯାତ୍ରା ନିର୍ବାହରେ ଅଶେଷ ଉପକାର କରିଅଛି । ମୋହର ସହାଧ୍ୟାୟୀଙ୍କ ମଧ୍ୟରେ ଶଙ୍କରପୁର ନିବାସୀ ବ୍ରଜସୁନ୍ଦର ପଟ୍ଟନାୟକ ଓ କାନକେଲ ବାବୁଙ୍କ ପୁତ୍ର ସୋମସୁନ୍ଦର ମହାନ୍ତି ମୋର ସ୍ନେହୀ ଥିଲେ । ସେମାନଙ୍କ ମଧ୍ୟରେ ମୋର ଅନ୍ତର ମିଳନ ଥିଲା ।

ବ୍ରହ୍ମପୁରଠାରେ ମାଟ୍ରିକୁଲେସନ ଶ୍ରେଣୀରେ ପଢୁଥିବାବେଳେ ସମାଜ ଓ ତାହାର ନିୟମାବଳୀ ପ୍ରତି ମୋର ମନ କ୍ରମଶଃ ଆକୃଷ୍ଟ ହେଲା । ମୋହର ମୁଣ୍ଡରେ ବଡ଼ ବାଳ ଥାଏ । କେଶ ବିନ୍ୟାସ ସଜାଡ଼ିବାରେ ବହୁ ସମୟ ଅଯଥା ନଷ୍ଟ ହୁଏ ଏବଂ ଅନେକ ଅସୁବିଧା ଭୋଗ କରିବାକୁ ପଡ଼େ । ଶାସ୍ତ୍ରଗ୍ରନ୍ଥରେ କେଶଶିଖା ରଖିବା ହିନ୍ଦୁମାନଙ୍କର ଏକ ସାମାଜିକ ନିୟମ । ସୁତରାଂ ଶିଖା ରଖି ମୁଁ ମୋହର ବାଳସବୁ କାଟି ପକାଇଲି । ମୋହର ପିତା ଅତି ଯତ୍ନରେ ମୋର ଏହି ବାଳ ବଢ଼ାଇଥିଲେ । ବାଳ କାଟି ପକାଇବା ଦେଖି ସେ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ସେ କାଳରେ ଲୋକେ ଲଣ୍ଡା ହେଉ ନ ଥିଲେ । ବେକତଳକୁ ଖଡ଼ୁ, ହାତକୁ ଖଡ଼ୁ ପ୍ରଭୃତି ବ୍ୟବହାର କରୁଥିଲେ । ଏବେ ଆଉ ସେକଥା ନାହିଁ । ଇଂରାଜୀ ପଢୁଥିବା ସହରବାସୀ କିମ୍ବା ଅଶିକ୍ଷିତ ମଫସଲବାସୀ

ସମସ୍ତେ ବାଳ କାଟି ସଜାନ୍ତି । ଲମ୍ବା ହେବାକୁ ଅନେକାଙ୍କ ଝୋଙ୍କ ଓ ସଭ୍ୟତାର ଚିହ୍ନ । ଉନ୍ନତ ବଙ୍ଗ ଓ ଆନ୍ଧ୍ରବାସୀଙ୍କର ବେଶଭୂଷା, ରୀତିନୀତି ଦେଖି ଉତ୍କଳୀୟ ବେଶଭୂଷା ପ୍ରତି ମୋ ମନରେ ଘୃଣା ଜନ୍ମିଲା ଏବଂ ଏହାର ସଂସ୍କାରକରିବାକୁ ପ୍ରବଳ ଇଚ୍ଛା ଜାତ ହେଲା । ସେତେବେଳେ ମୁଁ ଏବଂ ମୋର ସଙ୍ଗୀମାନେ ସମାଜ ସଂସ୍କାର ବିଷୟରେ ଯାଇ ଘରେ ଘରେ ସାଧୁ ସନ୍ନିଶାରେ, ଗ୍ରାମେ ଗ୍ରାମେ ସଭା କରି ନାନା ବିଧ ପ୍ରସ୍ତାବ କରୁଥିଲୁ ଓ ପ୍ରଚଳିତ ରୀତି ନୀତିର ତୀବ୍ର ପ୍ରତିବାଦ କରୁଥିଲୁ । ଆମ୍ଭମାନଙ୍କର ସମାଜରେ ପ୍ରଚଳିତ ଦୀକ୍ଷା, ବ୍ରତ, ଉପନୟନ, ବିବାହ, ପୂଜା, ଆରାଧନ ପ୍ରଭୃତି ରୀତି ନୀତିର ଅଳୀକତା ହୃଦୟଙ୍ଗମ କରି ସେ ସବୁର ସଂସ୍କାର କରିବାକୁ ମଧ୍ୟ ମନ ଉତ୍କଣ୍ଠିତ ହେଲା ।

ଶିକ୍ଷା, ସଭ୍ୟତା ମାନସିକ ଉନ୍ନତି, ଶାରୀରିକ ବଳ ଇତ୍ୟାଦି ବିଷୟ ନେଇ ଅନେକ ସମୟରେ ସଭା ସମିତି କରି ତର୍କ ବିତର୍କ କରୁଥିଲୁ । ସୁରାପାନ ପରି ଯେଉଁ ଅନୈତିକ ଘଟଣା ଥିଲା ତାହା କ୍ରମଶଃ ତିରୋହିତ ହେଲା ପ୍ରଥି ଔଷଧାର୍ଥେ ସୁରାପାନ ଅକର୍ତ୍ତବ୍ୟ ନୁହେଁ ବୋଲି ଭାବି ଭାବି କ୍ରମଶଃରେ ପରେ ଆମୋଦ ଓ ପ୍ରମୋଦାର୍ଥେ ମଦ ପିଇବା ପର୍ଯ୍ୟନ୍ତ ଗଲେ । ଏହି ମଦ୍ୟପାନ ସଭ୍ୟତା କେବଳ ଇଂରାଜୀ ଶିକ୍ଷିତରୁ ଜାତ ହୁଏ ବୋଲିବାକୁ ହେବ ନାହିଁ । କାରଣ ମୁଁ ଜାଣେ, ଅଣୁମାତ୍ର ଇଂରାଜୀ ନ ପଢ଼ିଥିବା ଅନେକ ନିଷ୍ଠାଶୀଳ ବ୍ରାହ୍ମଣ ପଣ୍ଡିତମାନେ ଦେବୀପୂଜା ନାମରେ ମଦ୍ୟ ସେବନ କରନ୍ତି । ଏଣୁ ଏତ ପୂଜାବିଧି ଅନ୍ୟାନ୍ୟ ଗୋପନୀୟ ଭାବରେ ଚଳେ ।

ଶିକ୍ଷା ନିମନ୍ତେ ମୋତେ ବ୍ରହ୍ମପୁରଠାରେ ୫ ବର୍ଷ ରହିବାକୁ ପଡ଼ିଥିଲା । ସେତେ ବେଳେ ଅଧ୍ୟୟନ ଏକମାତ୍ର କଠୋର ତପସ୍ୟା ଥିଲା । ସଦାଳାପ, ସଚ୍ଚିନ୍ତା ଓ ସାଧୁ ସଙ୍ଗରେ କାଳ ଅତିବାହିତ ହେଉଥିଲା । ୧୮୯୪ ଖ୍ରୀଷ୍ଟାବ୍ଦରେ ବ୍ରହ୍ମପୁର କଲେଜରୁ ଏଫ୍. ଏ. ପରୀକ୍ଷାରେ ପାଶ୍ କରି ବି. ଏ. ପଢ଼ିବା ନିମନ୍ତେ ରାଜମହେନ୍ଦ୍ରୀ ଯିବାକୁ ପଡ଼ିଲା । ସେତେବେଳେ ରାଜମହେନ୍ଦ୍ରୀଠାରୁ ବିଜୟନଗର ପର୍ଯ୍ୟନ୍ତ ରାସ୍ତା ଖୋଲା ହୋଇଥିଲା । ତେଣୁ ଗୋପାଳପୁରଠାରୁ ବିଶାଖାପାଟଣା ପର୍ଯ୍ୟନ୍ତ ଜାହାଜରେ ଏବଂ ସେଠାରୁ ରେଲ ଚଢ଼ି ରାଜମହେନ୍ଦ୍ରୀ

ଗଭର୍ଣ୍ଣମେଣ୍ଟ କଲେଜରେ ଦୁଇବର୍ଷ ପଢ଼ିବାକୁ ହେଲ । ହରିହର ଷଡ଼ଙ୍ଗୀ ଓ ମୁଁ ଦୁହେଁ ମିଶି ଏକବସାରେ ଥାଉ । କୃଷ୍ଣପଣ୍ଡା ନାମରେ ଜଣେ ବ୍ୟକ୍ତି ଆମର ପାଚକ ଭାବରେ ନିଯୁକ୍ତ ଥାଆନ୍ତି । ପରେ ନଳବଣ୍ଟାନିବାସୀ ନାରାୟଣ ପଣ୍ଡା ଆମର ପାଚକରୂପେ ନିଯୁକ୍ତ ହେଲେ ।

ରାଜମହେନ୍ଦ୍ରୀ ଦାକ୍ଷିଣାତ୍ୟରେ ଆନ୍ଧ୍ର ପ୍ରଦେଶାନ୍ତର୍ଗତ ' ଆନ୍ଧ୍ର ବ୍ରାହ୍ମଣମାନେ ଆମିଷଭୋଜୀ ନୁହନ୍ତି । ଆମିଷଭୋଜୀ ବ୍ରାହ୍ମଣମାନେ ଏମାନଙ୍କ ଦୃଷ୍ଟିରେ ଅବ୍ରାହ୍ମଣ । ଆମମାନଙ୍କୁ ଅନେକ ସମୟରେ ଗୋପନରେ ମାଛ ମାଂସ ରନ୍ଧନ କରିବାକୁ ହୋଇଥାଏ । ଆମିଷ ଭକ୍ଷଣ ବ୍ରାହ୍ମଣ ପକ୍ଷରେ ଗର୍ହିତ ମଧ୍ୟ ପାପ କର୍ମ ବୋଲିବା ଧାରଣା ଇଂରାଜୀ ଶିକ୍ଷା ପ୍ରଭାବ ଆନ୍ଧ୍ର ଛାତ୍ରମାନଙ୍କ ମନରୁ ଦୂରୀଭୂତ ହୋଇଥିଲା । କଲେଜ ହଷ୍ଟେଲର ଅନେକ ଆନ୍ଧ୍ର ବ୍ରାହ୍ମଣ ଛାତ୍ରମାନେ ଆମ ବସାରେ ଅପ୍ରକାଶ୍ୟ ଭାବରେ ମାଛ, ମାଂସ ଖାଇ ଚାଲି ଯାଉଥିଲେ । କଟକ ରେଭେନ୍ସା କଲେଜରେ ଏଫ. ଏ. ଶ୍ରେଣୀ ଗ୍ରନ୍ଥ ଥିବାବେଳେ ଶ୍ରୀଯୁକ୍ତ ଗୋବିନ୍ଦ ନାଥ ଗୁହ ଏମ. ଏ. କଲେଜର ପ୍ରିନ୍ସପାଲ ଥିଲେ । ତାଙ୍କର ଇତିହାସ ଓ ଦର୍ଶନଶାସ୍ତ୍ରରେ ପାଣ୍ଡିତ୍ୟ ଦେଖି ଅନେକ ମୁଗ୍ଧ ହୋଇଥିଲେ । ଥରେ ଉତ୍କଳ ଓ ଆନ୍ଧ୍ର ଛାତ୍ରମାନଙ୍କ ମଧ୍ୟରେ ଆମିଷ ଭକ୍ଷଣ ନେଇ ବାଦାନୁବାଦ ହେଲା । ସେତେବେଳେ ପ୍ରିନ୍ସପାଲ ଗୋବିନ୍ଦନାଥ ବାବୁ ଉତ୍କଳୀୟ ଛାତ୍ରମାନଙ୍କ ପକ୍ଷ ସମର୍ଥନ କରି କହିଥିଲେ, "ଆମିଷ ତ୍ୟାଗ ଲାଗି କେହି ବ୍ରାହ୍ମଣ କିମ୍ବା ଆମିଷ ଭୋଜନ ହେତୁ କେହି ଅବ୍ରାହ୍ମଣ ହୋଇ ପାରନ୍ତି ନାହିଁ ।"

ସେତେବେଳେ ରାଜମହେନ୍ଦ୍ରୀ କଲେଜରେ ବି. ଏ. ଉପାଧି ପରୀକ୍ଷାରେ ମନୋନୀତ ବିଭାଗ ଥିଲା ତିନୋଟି । ୧-ଦର୍ଶନ, ୨-ବିଜ୍ଞାନ, ୩-ଗଣିତ । ମୋର ଇତିହାସ ବିଭାଗରେ ଅଧ୍ୟୟନ କରିବାକୁ ପ୍ରବଳ ଇଚ୍ଛା ଥିଲା । କିନ୍ତୁ ଇତିହାସ ଶିକ୍ଷା ବିଭାଗ ନ ଥିବାରୁ ବିଜ୍ଞାନ ଶିକ୍ଷା ବିଭାଗରେ ପ୍ରବେଶ କଲି । ମୋର ରସାୟନିକ ଯନ୍ତ୍ର ଚାଳନରେ ହସ୍ତନୈପୁଣ୍ୟ ନ ଥିଲା । ଥରେ ଗୋଟିଏ କାଚନଳୀ ଅଗ୍ନିତାପରେ ଗରମ କରିବା ବେଳେ ନଳଟି ଫାଟିଯାଇ ମୋର ଅଙ୍ଗୁଳି

ମଧ୍ୟରେ ଚାଲିଗଲା । ଯେଉଁ ପିଡ଼ା ହେତୁ ମୁଁ ୧୫ ଦିନକାଳ ଅକର୍ମଣ୍ୟ ହୋଇ ପଡ଼ି ରହିଲି । ଉକ୍ତ ଶ୍ରେଣୀ ପରିତ୍ୟାଗ କରି ଦର୍ଶନ ବିଭାଗରେ ଶିକ୍ଷା ଆରମ୍ଭ କଲି । ସାହିତ୍ୟ, ବିଜ୍ଞାନ ଓ ଦର୍ଶନପ୍ରତି ମୋର ଶ୍ରଦ୍ଧା ବେଶୀ ଥାଏ ଓ ଗଣିତ ଅନିଚ୍ଛା ଓ ଅପାରଗତା ଥାଏ । ଅତ୍ୟନ୍ତ ଆଗ୍ରହ ସହକାରେ ବେଦାନ୍ତ ଦର୍ଶନ ଶିକ୍ଷା ଆରମ୍ଭ କଲି । କୌଣସି ବସ୍ତୁ, ଗୀତ ନୀତ ନିୟମର ତତ୍ତ୍ୱାନୁସନ୍ଧାନରେ ମୁଁ ସାଧାରଣତଃ ବିଶେଷ ଉତ୍ସାହ ସହକାରେ ଶ୍ରମସ୍ୱୀକାର କରିଥାଏ । ସପ୍ତାହିକ ପରୀକ୍ଷା କଥା ଦୂରେ ଥାଉ ବାର୍ଷିକ ପରୀକ୍ଷା ପ୍ରତି ମଧ୍ୟ ଦୃଷ୍ଟି ନ ରଖି କୌଣସି କଥାର ଦାର୍ଶନିକ ତତ୍ତ୍ୱାନୁସନ୍ଧାନରେ କାଳ ଅତିବାହିତ କରି ଚାଲିଥାଏ । ଦର୍ଶନ ବିଭାଗର ଶିକ୍ଷକମାନେ ମତେ ଭଲ ପାଉଥିଲେ କୌଣସି ସାପ୍ତାହିକ ପରୀକ୍ଷାରେ ଉଚ୍ଚତମ ନମ୍ବର ରଖିପାରି ନ ଥିଲେହେଁ ମୁଁ ଉଚ୍ଚ ଧରଣର ଦର୍ଶନ ଛାତ୍ର ବୋଲି ଆମ୍ଭ ଶିକ୍ଷକମାନଙ୍କର ଧାରଣା ଥିଲା ।

ନିମ୍ନ ଶ୍ରେଣୀମାନଙ୍କରେ ଯେଉଁ ପ୍ରକାର ଅତ୍ୟନ୍ତ ଚପଳତା ଓ ବାଲ୍ୟସୁଲଭ ଦେଖାଯାଏ ଉଚ୍ଚଶ୍ରେଣୀଭୁକ୍ତ ହେବାରୁ ଆଉ ତାହା ନ ଥାଏ । କଠୋର ପରିଶ୍ରମ ଓ ସଂଯମ ସହକାରେ ଗମ୍ଭୀରଭାବ ଅବଲମ୍ବନ କରିବାକୁ ପଡ଼ିଥାଏ । ସେତେବେଳେ ଅଧ୍ୟୟନ ଏକମାତ୍ର ତପସ୍ୟା ଥିଲି । ସଦାଳାପ, ସଚ୍ଚିନ୍ତା ଓ ସାଧୁ ସଙ୍ଗମରେ ଦିନ ଅତିବାହିତ ହୁଏ । ଶିକ୍ଷା ଓ ସତ୍ସଙ୍ଗ ପରିବର୍ତ୍ତ ମନର ସଂକୀର୍ଣ୍ଣତାକୁ ଦୂର କରିଥାଏ । ଯୌବନ ରାଜ୍ୟରେ ବିଚରଣ କଲାବେଳେ କଠୋର ତପସ୍ୟା ମଧ୍ୟରେ ସ୍ୱଚ୍ଛା ସମୟେ ସମୟେ କୁସଙ୍ଗରେ ପଡ଼ି କୁସଙ୍ଗରେ ପଡ଼ି କୁକର୍ମରେ ପ୍ରବୃତ୍ତି ଜନ୍ମିଥାଏ । ଏହି ପବିତ୍ର ଛାତ୍ର ଜୀବନରେ ମଧ୍ୟ ଅନେକ ପ୍ରକାର ସ୍ଖଳନ ଘଟିଥାଏ ।

## —ସାହିତ୍ୟ ଚର୍ଚ୍ଚା—

ମୁଁ ପଞ୍ଚମ ଶ୍ରେଣୀ ବା ପ୍ରି. ମାଟ୍ରିକୁଲେସନ ଛାତ୍ର ଥିବା ଦିନ ଖବର କାଗଜ ଗ୍ରାହକ ହେବାକୁ ଶିଖିଲି । ସର୍ବ ପ୍ରଥମେ ସମ୍ବଲପୁର ହିତୈଷିଣୀ ପାଠ କରୁଥିଲି । ସେତେବେଳେ ଇନ୍ଦ୍ରଧନୁ ଓ ବିଜୁଳି ନାମକ ସାମୟିକ ପତ୍ରିକା- ଦ୍ୱୟକୁ ମଧ୍ୟ ଶ୍ରଦ୍ଧା ସହକାରେ ପଢ଼ୁଥାଏ । କ୍ରମେ କ୍ରମେ ଉତ୍କଳର ପ୍ରାୟ

କାଗଜ ପାଉଥାଏ । ପୁଣି ସାପ୍ତାହିକ, ମାସିକ ପ୍ରାପ୍ତ ପତ୍ରୁ କାଗଜରେ ପ୍ରବନ୍ଧ ଲେଖୁଥାଏ । ମୋର ନାନା ସମୟର ନାନାବିଧ ପ୍ରବନ୍ଧଗୁଡ଼ିକ ଏକ ପୁସ୍ତକ-ଆକାରରେ ଛାପି ରଖିବା ପାଇଁ ମୋର ଅନେକ ବନ୍ଧୁ ମତେ ଅନୁରୋଧ କରି ଥାଆନ୍ତି । ପରମବନ୍ଧୁ ନୀଳମଣି ବିଦ୍ୟାରତ୍ନଙ୍କର ଅନୁରୋଧ ବିଶେଷ ଭାବରେ ଥାଏ । କେହି କେହି କହୁଥାନ୍ତି ଯେ ମୋର ଏହି ଲେଖାଗୁଡ଼ିକ ସଂକ୍ଷିପ୍ତ ଭାବରେ ଇତସ୍ତତଃ ପଡ଼ିରହି ଯାଉଅଛି । ଖବର କାଗଜ ଲେଖାରେ ସମୟ ଓ ଶକ୍ତି ବୃଥାବ୍ୟୟ କରିଦେବା ଅପେକ୍ଷା କୌଣସି ପୁସ୍ତକ ଲେଖିଲେ ଭଲ ହୁଅନ୍ତା । ବୋଲି ଅନେକ ସମୟରେ ଅନେକ ବନ୍ଧୁ ମୋତେ କହୁଥାନ୍ତି । ମୋର ଲେଖା ଗୁଡ଼ିକର ଲକ୍ଷ୍ୟ ବିଶେଷ ଭାବରେ ସମାଜ ସଂସ୍କାର ଆଡ଼କୁ ରହୁଥାଏ । ଏମାନ୍ଙ୍କ ବିଶେଷରେ ସରସ୍ୱତୀ କବି ଫକୀର ମୋହନ, ସାହିତ୍ୟ ସମ୍ପାଦକ ବିଶ୍ୱନାଥ, ଉତ୍କଳ ଏବଂ ଲେଖକ ଗୋପାଳ ଚନ୍ଦ୍ର, ସମ୍ପାଦକ ନୀଳମଣି, ସଙ୍ଗୀତଜ୍ଞ ଦାମୋଦର ମତେ ସଂସ୍କାରକ ଆଖ୍ୟା ଦେଇ ଥାଆନ୍ତି । ପୁଣି ମୋର ଅନେକ ସଂସ୍କାର ପ୍ରସ୍ତାବମାନ ସମୟେ ସମୟେ ଦେଶକାଳପାତ୍ର ଅତିକ୍ରମ କରି ଅନ୍ୟାନ୍ୟ କରି, ଉତ୍କଟ ଓ ବୈପ୍ଳବିକ ବୋଲି କହି କେହି କେହି ରକ୍ଷଣଶୀଳ ପଣ୍ଡିତମାନେ ମୋତେ ସଂସ୍କାରକ ଉପାଧି ଦେଉଥାନ୍ତି । ସାମାଜିକ କୁନୀତି, କୁତ୍ସିତ ପନ୍ଥା ମୁଁ ସର୍ବଦା ତୀବ୍ର ଭାବରେ ଲେଖନୀ ଚାଳନ କରୁଥାଏ । ହିନ୍ଦୁ ସମାଜର ଜାତି-ଭେଦ ବ୍ୟବସ୍ଥା, ବାଲ୍ୟ ବିବାହ ଓ ଅବରୋଧ ପ୍ରଥା, ଚିର ବୈଧବ୍ୟ ପୌରୋହିତ୍ୟ ଅତ୍ୟାଚାର ଇତ୍ୟାଦି ସାମାଜିକ କୁସଂସ୍କାର ପ୍ରତି ମୁଁ ସର୍ବଦା ନିରପେକ୍ଷ ଖଡ୍ଗହସ୍ତ ଥାଏ ।

ମୋହର ଛାତ୍ରାବସ୍ଥାରେ ଚନ୍ଦ୍ରଲକ୍ଷ୍ମୀ ସ୍କୁଲର ମିଡ଼ିଲସ୍କୁଲ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବାଠାରୁ ବି. ଏ. ଉପାଧି ପରୀକ୍ଷା ପର୍ଯ୍ୟନ୍ତ ମୁଁ ଛାତ୍ରବୃତ୍ତି ପାଉଥାଏ । ମିଡ଼ିଲ ସ୍କୁଲ ପରୀକ୍ଷା ପ୍ରଥମ ଶ୍ରେଣୀରେ ପାସ କରିଥିଲି । ସେତେବେଳେ ମିଡ଼ିଲ ସ୍କୁଲ ପାସ୍ଟା ମାଟ୍ରିକୁଲେସନ ପରୀକ୍ଷା ସହିତ ସମାନ ଧାର୍ଯ୍ୟ ହେଉଥିଲା ୧୮୮୮ ଖ୍ରୀଷ୍ଟାବ୍ଦରେ ଚନ୍ଦ୍ରଲକ୍ଷ୍ମୀ ମିଡ଼ିଲ ସ୍କୁଲ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବ ଓଡ଼ିଆ ଛାତ୍ରମାନଙ୍କ ମଧ୍ୟରେ ମୁଁ ପ୍ରଥମ ହେବା ଯୋଗୁଁ ମାସିକ ୫ ୬୯ ହିସାବରେ ଗଭର୍ଣ୍ଣମେଣ୍ଟ ଛାତ୍ରବୃତ୍ତି ଦୁଇ ବର୍ଷ ପାଇଲି । ମାଟ୍ରିକୁଲେସନ ପରୀକ୍ଷାରେ ପାସ

କଲମରେ ମାସିକ ୫୧୦୧ ଲେଖାଏଁ ଦୁଇବର୍ଷ ବୃତ୍ତି ପାଇଲି । ପୁଣି ଏଫ୍. ଏ. ପାସ୍ କଲା ଉତ୍ତାରୁ ପାରଳାରାଜାଙ୍କ ପ୍ରଦତ୍ତ ବୃତ୍ତି ମାସିକ ୫ ୨୦୧ ଲେଖାଏଁ ଓ ଗଭର୍ଣ୍ଣମେଣ୍ଟ ବୃତ୍ତି ମାସିକ ୫ ୧୫୧, ଏହିପରି ମାସିକ ୫ ୩୫୧ ଲେଖାଏଁ ଦୁଇବର୍ଷ ବୃତ୍ତି ପାଇଲି ।

ଆମ୍ଭେ ଦୁହେଁ ଅର୍ଥାତ୍ ଖୁଡ଼ୁତା ପୁଅ ଭାଇ ଶ୍ରୀଯୁକ୍ତ ହରିହର ପଣ୍ଡା ଓ ମୁଁ ପ୍ରଥମେ ଇଂରାଜୀ ପଢ଼ା ଆରମ୍ଭ କଲାବେଳେ ଆମ୍ଭମାନଙ୍କର କକେଇ ଯେ କି ଆମ୍ଭ ଘରେ ପ୍ରଧାନ ଅର୍ଜକ ଥିଲେ ଆମ୍ଭମାନଙ୍କୁ ଉପହାସ କରୁଥିଲେ । କହୁଥିଲେ "ଏମାନେ ଇଂରାଜୀ ପଢ଼ି ମାଜିଷ୍ଟ୍ରେଟ୍ ହୋଇ ଆମ୍ଭମାନଙ୍କ ବଂଶନାମ ରକ୍ଷା କରିବେ । ଆମ୍ଭମାନଙ୍କୁ ପୋଷି ପକାଇବେ ।" କିନ୍ତୁ ଆମ୍ଭେମାନେ ଯେତେବେଳେ ଛାତ୍ରବୃତ୍ତି ପାଇ ଛାତ୍ର ଜୀବନ ନିର୍ବାହ କରି ପାରିଲୁ, ଘରୁ ଆଉ ଅର୍ଥ ସାହାଯ୍ୟ ଲୋଡ଼ିଲୁ ନାହିଁ ସେତେବେଳେ ସେ ସହାନୁଭୂତି ଦେଖାଇ ଆମ୍ଭମାନଙ୍କ ବିଦ୍ୟାଶିକ୍ଷାରେ ଶ୍ରଦ୍ଧା ପ୍ରକାଶ କଲେ ଏବଂ ସମୟେ ସମୟେ କିଛି କିଛି ଅର୍ଥ ସାହାଯ୍ୟ କରିଥିଲେ ।

ବିଦ୍ୟା ଶିକ୍ଷା ସମୟରେ ଏପରି ଇଚ୍ଛା ହେଉଥିଲା ଯେ ଶୀଘ୍ର ବିଦ୍ୟାଶିକ୍ଷା ଶେଷ କରି ଗଭର୍ଣ୍ଣମେଣ୍ଟ କାର୍ଯ୍ୟରେ ନିଯୁକ୍ତ ହୋଇ ଧନ ଓ ଅଧିକାରିତ୍ୱ ସମ୍ପାଦନ କରି ସ୍ୱାଧୀନ ଭାବରେ ସଂସାର ସୁଖ ଅନୁଭବ କରିବି । ଆଜିକାଲି ପରି ସେତେବେଳେ ମଧ୍ୟ ଇଂରାଜୀ ଶିକ୍ଷାର ପ୍ରଧାନ ଲକ୍ଷ୍ୟ ଥିଲା ଗଭର୍ଣ୍ଣମେଣ୍ଟ ଚାକିରି କିମ୍ବା ଓକିଲାତି । କିନ୍ତୁ ଆଜି ଚାକିରିରେ ପ୍ରବେଶ କରି ଚିରଦିନ ପରାଧୀନତାରେ ଅତ୍ୟନ୍ତ ବିରକ୍ତ ହୋଇ ପୁନରପି ଛାତ୍ର ଜୀବନ ପାଇବାକୁ ପ୍ରବଳ ଇଚ୍ଛା ହେଉଅଛି । ବାସ୍ତବରେ ଛାତ୍ର ଜୀବନ ସ୍ୱର୍ଗୀୟ ଜୀବନ, ସଂସାରର କୌଣସି ଚିନ୍ତା ତାଙ୍କର ମନରେ ପ୍ରବେଶ କରି ନ ଥାଏ । ଲୋଭ, ମୋହ, ସ୍ୱାର୍ଥପରତା, ପରଶ୍ରୀକାତରତା କାପଟ୍ୟ, କୁଟିଳତା, ଇତ୍ୟାଦିର ଜାଲ ପରିବେଷ୍ଟନ କରି ନ ଥାଏ ।

"ଆଉ ଖୋଜିଲେ କାହିଁ ନ ପାଇ କଥା,
ଫିଟି ନ ଯିବକ କାହିଁ ମେଠ ବ୍ୟଥା ।"

୧୮୯୭ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ମାନ୍ଦ୍ରାଜରେ ବି. ଏ. ପରୀକ୍ଷାରେ ପାସ୍ କଲି । ମାନ୍ଦ୍ରାଜ-ଠାରୁ ଗ୍ରାମକୁ ଫେରି ଆସିଲି । ସେତେବେଳେ ବଡ଼େଭଇ ବାସୁଦେବ ମହାମୋହାନ୍ତୀଙ୍କର ବସୁଚକା ରୋଗରେ ସ୍ତ୍ରୀ-ବାଳୁଙ୍କା-ବେଳେ ବୋଉଭଗିଣୀଠାରେ କାଳ ହୋଇଗଲା । ଆମ୍ଭେମାନେ ସେ ପର୍ଯ୍ୟନ୍ତ ଅବିଭକ୍ତ ଏକ କୁଟୁମ୍ବରେ ଥିଲୁ । ଭାରତର ହିନ୍ଦୁମାନଙ୍କ ମଧ୍ୟରେ ପୁରୁଷାନୁକ୍ରମେ ଏକାନ୍ନବର୍ତ୍ତୀ ପରିବାରରେ ରହିବା ପ୍ରଥା ପ୍ରଚଳିତ । ଏପରି ବଡ଼ କୁଟୁମ୍ବ ଏକାଠି ରହିବା ଦ୍ୱାରା ଉପକାର ଯେପରି ଅପକାର ସେପରି ଘଟିଥାଏ । ଅଶିକ୍ଷିତା ସ୍ତ୍ରୀମାନଙ୍କ ମଧ୍ୟରେ ଖାଇବା ପିନ୍ଧିବା ନେବା ଦେବା ଇତ୍ୟାଦି ସାମାନ୍ୟ ବିଷୟ ନେଇ କଳହ ଜାତ ହୋଇଥାଏ । ପୁରୁଷମାନେ କୌଣସି ନା କୌଣସି ପକ୍ଷ ଅବଲମ୍ବନ କରି ପରସ୍ପର ବିରୋଧୀ ହୋଇ ପଡ଼ନ୍ତି । ସୁତରାଂ ପାରିବାରିକ ସୁଖଶାନ୍ତି ନଷ୍ଟ ହୋଇଥାଏ । ବ୍ୟକ୍ତିବିଶେଷରେ ଆତ୍ମନିର୍ଭରଶୀଳତା ନ ଥାଏ । ବରଂ ଆଳସ୍ୟ, ପରନିର୍ଭରତା ଓ ପରମୁଖାପେକ୍ଷୀ ଭାବର ବଶୀଭୂତ ହୋଇ କୁଟୁମ୍ବସ୍ଥ ଅନେକ ଲୋକ ନିଜର ପୁରୁଷକାର ଛାଡ଼ି ଉଦାସୀନ ରହନ୍ତି । ଏହା-ସତ୍ତ୍ୱେ ସମଷ୍ଟିଭୁକ୍ତ କୁଟୁମ୍ବରେ କୌଣସି ଦୁଃଖ, କ୍ଲେଶ ଓ ବିପଦରେ ପରସ୍ପର ସହାୟ ହେବା ଯୋଗୁଁ ସେମାନଙ୍କର କଷ୍ଟ ଓ ଚିନ୍ତାର ହ୍ରାସ ପାଇଥାଏ । କୌଣସି ବ୍ୟକ୍ତିଙ୍କ ପରିଶ୍ରମ ଫଳରେ ଅନ୍ୟାନ୍ୟ କାର୍ଯ୍ୟ ଅକ୍ଷମ ବିକଳାଙ୍ଗ ବ୍ୟକ୍ତିମାନଙ୍କର ଜୀବନ ନିର୍ବାହ ହୋଇ ଯାଇଥାଏ । ସେ ଯାହାହେଉ, ବୟଃପ୍ରାପ୍ତ ହୋଇ କାର୍ଯ୍ୟ ନିପୁଣ ହେବା ପରେ ପ୍ରତ୍ୟେକ ବ୍ୟକ୍ତି ନିଜ ନିଜ ପରିବାର ନେଇ ସୁହୃଦ ଭାବରେ ପୃଥକ୍ ରହିବା ଶ୍ରେୟସ୍କର ।

ଆମ ଘର ଧନପ୍ରତିଷ୍ଠିତ ଘର ବୋଲି ଉତ୍ତର ଗଞ୍ଜାମରେ ସୁବିଖ୍ୟାତ ଥିଲା । ଆମ କୁଟୁମ୍ବରେ ବିବାଦ, ବିସମ୍ବାଦ, ମନୋମାଳିନ୍ୟ ଘଟିଥିଲେ ହେଁ, ଜେଜେଇ ଥିବା ଯାଏ ଆମ୍ଭେମାନେ ପୃଥକ୍ ହୋଇ ନ ଥିଲୁ । ତାହାଙ୍କର କାଳ ହୋଇଯିବା ପରେ ୧୮୯୮ ଖ୍ରୀଷ୍ଟାବ୍ଦରେ ଆମ୍ଭେମାନେ ବିଭକ୍ତ ହୋଇ ପଡ଼ିଲୁଁ । ଆମ୍ଭ ବଣ୍ଟନ ପରିଶୋଧନରେ ସ୍ୱଳ୍ପମାତ୍ର ନ୍ୟୂନାଧିକ ବିଚାର ନ କରି ଜାମିନାମ୍ବି ନବଦେବାକୁ ମୋର ଏକାନ୍ତ ଇଚ୍ଛା ଥିଲା । ଆମ୍ଭମାନଙ୍କର ଉପ୍ରନ୍ତି

ପିତୃବ୍ୟ କ୍ଷେତ୍ର ପଣ୍ଡାଙ୍କର ଦତ୍ତକ ପୁତ୍ର ହେବାକୁ ମୁଁ ସ୍ୱୀକାର କଲି । ସୁତରାଂ ଆମ୍ଭମାନଙ୍କର ସକଳ ସମ୍ପତ୍ତି ଛଅ ଭାଗରେ ବିଭକ୍ତ ହେଲା । ବେଲଗୁଣ୍ଠା କରଣ ନାରାୟଣ ଦାସ, ପୋଡ଼ଗଡ଼ା ଖିଲ୍ଲବାଡ଼ି ନିବାସୀ ଦ୍ରୋଣୋଈ ସତ୍ୟବାଦୀ ଦାସ, ବୈଦ୍ୟ ଫକୀର ମହାପାତ୍ର, ବେଲଗୁଣ୍ଠା ନିବାସୀ ପୁରୋହିତ ଲକ୍ଷ୍ମୀନାରାୟଣ ପତି— ଏମାନଙ୍କ ପଞ୍ଚାୟତରେ ବଣ୍ଟନ କାର୍ଯ୍ୟ ନିଷ୍ପନ୍ନ ହେଲା । କିନ୍ତୁ ଜଣେ ଖୁଡ଼୍ତୁତା ପୁଅ ଭାଇ ଗଙ୍ଗାପାଣି ପଣ୍ଡା ପଞ୍ଚାୟତର ରାୟ ଅମାନ୍ୟ କରିବାରୁ ବ୍ରହ୍ମପୁର ଜଜ କୋର୍ଟରେ ମକଦ୍ଦମା ହେଲା । ଏହି କଳହ ନିବାରଣ ନିମନ୍ତେ ମୁଁ ମୋର ଭାଗରୁ କେତେକ ସମ୍ପତ୍ତି ଅନ୍ୟ ଭାଇମାନଙ୍କୁ ଦେଇ ଦେବାରୁ ସେତେବେଳେ ବିବାଦ ତୁଟି ଗଲା । ଆମ୍ଭେମାନେ ସେ ଯାହାର ଦୁଃଖେ ସୁଖେ ପୃଥକ୍ ପୃଥକ୍ ହୋଇ ରହିଲୁ ।

୧୮୯୮ ଖ୍ରୀଷ୍ଟାବ୍ଦରେ ଆମ୍ଭମାନଙ୍କର ବାଣ୍ଟି ହେବା ସମୟରେ ମୋହର ପିତାଙ୍କର ବିୟୋଗ ହୋଇଥିଲା । ଆମ୍ଭମାନଙ୍କୁ ବିଭକ୍ତ ହେବା ଦେଖିବା ବୋଧ-ହୁଏ ତାଙ୍କର ଇଚ୍ଛା ନ ଥିଲା । ତାହାଙ୍କର ମନୋବାଞ୍ଛା ପୂର୍ଣ୍ଣ ହେଲା । ଆମ୍ଭେ-ମାନେ ବାଣ୍ଟି ନ ହେଉଣୁ ସେ ୭୫ ବର୍ଷ ବୟସରେ ସ୍ୱର୍ଗଧାମକୁ ଚାଲିଗଲେ । ସେ ବଡ଼ ସନ୍ତୁଷ୍ଟ ଓ ଧାର୍ମିକ ଥିଲେ । ସେ ଯାହାକୁ ଯାହା ଦଅନ୍ତି ଅନ୍ୟ କାହାକୁ ନ ଦେଖାଇ ଦଅନ୍ତି । ବ୍ରାହ୍ମଣମାନଙ୍କୁ ହଜାର ହଜାର ଟଙ୍କା ପର୍ଯ୍ୟନ୍ତ ଦେଇ-ଦେଇଥିଲେ । ଷଡ଼ଙ୍ଗୀପଲ୍ଲୀ ନିବାସୀ ବନମାଳୀ ରଥେ ଓ ଗୋପାଳ ରଥେ ଶିବ ଓ ବିଷ୍ଣୁ ମନ୍ଦିରରେ ନାନାବିଧ ଜପ, ତପ, କର୍ମକାଣ୍ଡ କରି ଏହାଙ୍କଠାରୁ ଅନେକ ଟଙ୍କା ନେଇଥିଲେ । ଆମ ମିତା କହନ୍ତି—

“କର୍ମ ଆଦର ସହିବ ଦୁଃଖ
କେବେହେଁ ନୋହିବ ବିମୁଖ ।”

ସହିବା ଲୋକ ବଡ଼ଲୋକ । ଭାଇମାନଙ୍କର ଖାଲି ତାଙ୍କ ପ୍ରତି ଦ୍ୱିତୀୟବାର ବିବାହିତା ଦ୍ୱିତୀୟା ଭାର୍ଯ୍ୟାଙ୍କ କଟୁ ବଚନ ସେ ଯାହା ସହିଥିଲେ ଅନ୍ୟ କେହି

ଲୋକ ଯେପରି ସହବ, ଏପରି ଲୋକ ଅନ୍ୟତ୍ର ମୁଁ ଏ ପର୍ଯ୍ୟନ୍ତ ଦେଖିନାହିଁ । ମନୁଷ୍ୟତା ଓ ଧର୍ମର ଅବତାର, ଧନ୍ୟ ସେ ମହାତ୍ମା !

ମୋହର ବିମାତା (ଜନ୍ୟା ମା, ସାବନ୍ତବୋଉ । ବାପର ଦୁଇଟି ଭାର୍ଯ୍ୟା ହେଲେ ଦ୍ୱିତୀୟ ଭାର୍ଯ୍ୟାକୁ ପ୍ରଥମ ଭାର୍ଯ୍ୟାର ସନ୍ତାନର କନ୍ୟାମା ଜନ୍ମା ସାବତ ମା ବୋଲାଯାଏ ।) ଅତ୍ୟନ୍ତ ଦୁଷ୍ଟା ଓ କଳହ ପ୍ରିୟା ଥିଲେ । ମୋହର ସ୍ତ୍ରୀ ମଧ୍ୟ ଶାନ୍ତ ପ୍ରକୃତିର ଲୋକ ନ ଥିଲେ । ସୁତରାଂ ଶାଶୁ ବୋହୂ ମଧ୍ୟରେ ସର୍ବଦା ତୁମୁଳ କଳହ ଲାଗୁଥିଲା । ଗୃହରେ ଏହି ଅଶାନ୍ତି ହେତୁ ମୁଁ ବେଶୀକାଳ ବିଦେଶରେ ରହି ଅଧିକ ମନ୍ତ୍ରଣା ଭୋଗମାଗିଲି ନାହିଁ ।

ଆମ୍ଭମାନଙ୍କ ମଧ୍ୟରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ । ମୋହର ପ୍ରାୟ ୧୬ ବର୍ଷ ବୟସରେ ମୁଁ ତୃତୀୟ ଶ୍ରେଣୀରେ ପଢୁଥିବା ବେଳେ ଆଠଗଡ଼ ଗୋଲପଡ଼ା ନରହରି ଦାଶଙ୍କ ସୁନା ନାମ୍ନୀ ଏକାଦଶବର୍ଷୀୟ କନ୍ୟା ସହିତ ମୋର ବିବାହ ହୋଇଥିଲା ।

ମୁଁ ପଞ୍ଚମ ଶ୍ରେଣୀରେ ପଢ଼ୁଥିବା ବେଳେ ମୋର ସ୍ତ୍ରୀ ଗୃହଯୋଗ୍ୟ (ପ୍ରଥମ ରଜସ୍ୱଳା) ହୋଇଥିଲେ । ମୋର ବ୍ରହ୍ମୋପାସନା ବିଧାନ ପ୍ରକାଶେ ଅନେକ ଲୋକ ମୋତେ ଅନେକ ପ୍ରକାର ଅନୁରୋଧ କଲେ, ଆଶା, ପ୍ରଲୋଭନ ଦେଖାଇଲେ, ଭୟ ପ୍ରଦର୍ଶନ କି କଲେ, ନାନାଭାବେ ଗାଳିଦେଲେ, ନିନ୍ଦା କଲେ, ଭର୍ତ୍ସନା କଲେ, ଫୁସୁଲା ଫୁସୁଲି କଲେ ଅଥଚ ମୁଁ ଅବିଚଳିତ ରହିଲି । ଏହିପରି ପାଞ୍ଚବର୍ଷ ବିତିଗଲା । ମୁଁ ଯେତେବେଳେ ପ୍ରଥମ ବର୍ଷ ଏଫ. ଏ. କ୍ଲାସରେ ଅନୁତ୍ତୀର୍ଣ୍ଣ ହେଲି ସେତେବେଳେ ସେମାନେ କହିଲେ ଯେ ସ୍ତ୍ରୀର ନିଃଶ୍ୱାସରେ ମୁଁ ଫେଲ ହେଲି । ରଜସ୍ୱଳା ସ୍ତ୍ରୀକି ଆଉ ପିତାଳୟରେ ରଖା-ଯାଇ ପାରିବ ନାହିଁ— ଏହି କଥା ବୁଝି ବ୍ରହ୍ମୋପାସନା ବିଧାନ ପ୍ରକାଶେ ସ୍ୱୀକୃତ ହେଲି । ୧୮୯୪ ଖ୍ରୀଷ୍ଟାବ୍ଦରେ ମୋର ସ୍ତ୍ରୀ ପିତାଳୟରୁ ଶ୍ୱଶୁର ଗୃହକୁ ଆସିଲେ । ଗର୍ଭାଧାନର କ୍ରିୟା-ବିଧାନ ବିନା ବାପ୍ତିଶ୍ମ ଗର୍ଭାଧାନ କ୍ରିୟା ହୋଇ ପାରି ନ

ଥିଲି । ମୋ ସ୍ତ୍ରୀ ମୋତେ ଆଗ କଥିତ କାହିଁବେ ଜାଣିବା ମାତ୍ରେ ମୁଁ ଶୁଣି ହୋଇ ଗୃହିଁ ରହିଲି । ମୋ ସ୍ତ୍ରୀ ମଧ୍ୟ ମୋତେ ଅପେକ୍ଷା କରି ରହିଲେ । ଉଭୟେ ଏହିପରି ପରସ୍ପରକୁ ଅପେକ୍ଷା କରି ରହିଲୁ, ରାତି ପାହିଗଲା ।

୦ ଶାଶୁ ବୋହୂଙ୍କର ମନରେ ମେଳ ହେଲା ନାହିଁ । ସର୍ବଦା ସ୍ତ୍ରୀଙ୍କର ଅଭାବ ଅଭିଯୋଗ ଶୁଣି ମୋତେ ବ୍ୟସ୍ତ ହେବାକୁ ପଡ଼େ । ଏଣେ ପିତା ମହୋଦୟ ବୃଦ୍ଧ, ପୀଡ଼ିତ ଏବଂ ଅସହାୟ । ଏହିପରି ନାନା କାରଣରୁ ବି. ଏ. ପାଶ ପରେ ମୁଁ ମୋର ଅଧ୍ୟୟନ ଶେଷ କରି ଗ୍ରାମକୁ ବାହୁଡ଼ି ଆସିଲି ।

୧୮୯୭ ଜାନୁଆରିରେ ବି. ଏ. ପାଶ୍ କରିସାରି ପୂର୍ବ ଏକବର୍ଷ କାଳ ଗ୍ରାମରେ ବସିଲି । ଆମ୍ଭେମାନେ ବାଣ୍ଟି ହେଲାରୁ ମୁଁ ଆମ ଭାଇମାନଙ୍କ ପାଖେ ନ ରହି ଆମ ଗ୍ରାମର ଅନ୍ୟ ଜାଗାରେ ୨ଟା ଭିହ ଆଉ ଦୁଇଟା କଛାଘର କିଣି ସେହି ଜାଗାରେ ପ୍ରାୟ ୫ ହଜାର ଟଙ୍କା ଖର୍ଚ୍ଚ କରି ଗୋଟିଏ ପକ୍କା ଗୃହ ନିର୍ମାଣ କରାଇଲି । ଆମ ଦେଶର ଲୋକେ ଘରେ ବଡ଼ ବଡ଼ ଖିଡ଼ିକି ରଖନ୍ତି ନାହିଁ । ଘର ଝାଲୁକା ହୋଇଯିବ, ବାହାର ଲୋକେ ଭିତର ଦେଖିନେବେ, କାଳେ ଚୋର ପଶିଯିବେ ଏହି ଭୟରେ ଲୋକେ ବହୁ ସଂଖ୍ୟକ ବା ବଡ଼ ବଡ଼ ପଞ୍ଜର ରଖନ୍ତି ନାହିଁ; ବାୟୁ ଓ ଆଲୋକରୁ ବଞ୍ଚିତ ହୁଅନ୍ତି । ଏହି ପ୍ରଚଳିତ ପ୍ରଥା ବିରୋଧରେ ମୁଁ ଅନେକ ବଡ଼ ବଡ଼ ଖିଡ଼ିକି ରଖାଇଲି । ଆମ ଘରଟାକୁ ଲୋକେ କଟକି ଘର ବା ବଙ୍ଗଳାଘର କହନ୍ତି । ଏହି ଗୃହ ନିର୍ମାଣ ପରେ ମୁଁ ଓକିଲି ଅନୁସରଣରେ ବାହାରିଲି ।

ଏହି ସମୟରେ ଆମ ଗ୍ରାମ ରୟତମାନେ ଗଭର୍ଣ୍ଣମେଣ୍ଟ ଜଳ ସକାଶେ ଖଣ୍ଡେ ଦରଖାସ୍ତ ଲେଖିଦେବା ନିମନ୍ତେ ମୋତେ ଅନୁରୋଧ କରିଥିଲେ । ମୁଁ ଦରଖାସ୍ତଟି ଇଂରାଜୀ ଭାଷାରେ ଲେଖି ଦେଇଥିଲି । ସେମାନେ ଉକ୍ତ ଦରଖାସ୍ତ ନେଇ ଜମାବନ୍ଦୀ ସମୟରେ ଜିଲ୍ଲା କଲେକ୍ଟର ଟେଇଲର ସାହେବଙ୍କଠାରେ ଦାଖଲ କରିଥିଲେ । ମୁଁ ଉକ୍ତ ଦରଖାସ୍ତରେ ପ୍ରସଙ୍ଗ କ୍ରମେ ଏହି ମର୍ମରେ ଲେଖିଥିଲି- ନିମ୍ନ ସ୍ତରର ରେଭିନ୍ୟୁ କର୍ମଚାରୀମାନେ ରୟତଙ୍କ ସକାଶେ ଜଳ

ଯୋଗାଇ ଦେବାକୁ ନାହାନ୍ତି କିମ୍ବା ନିଷ୍ଠୁର ଭାବରେ କର ଆଦାୟ କରି-
ଦେବାକୁ ଅଗ୍ରସର । ମୁସଲମାନ ରାଜତ୍ୱରେ ଯେଉଁ ଅନ୍ୟାୟ ଅତ୍ୟାଚାର ଚଳି
ଯାଉଥିଲା ତାହା ଏବେ ଇଂରେଜ ଶାସନରେ ଶୋଭନୀୟ ନୁହେଁ । କଲେକ୍ଟର
ସାହେବ ଉକ୍ତ ଦରଖାସ୍ତ ନିଜେ ପଢ଼ି ତହିଁର ଭାଷା ଅତ୍ୟନ୍ତ କର୍କଶ ଓ
ଅନୁପଯୁକ୍ତ ବୋଲି ମନ୍ତବ୍ୟ ପ୍ରକାଶ କରି ମୋହର ନାମଟା ପଗୁଣ ତାହାଙ୍କର
ନୋଟ ବହିରେ ଲେଖି ରଖିଥିଲେ । ମୁଁ ଯେତେବେଳେ କାର୍ଯ୍ୟପ୍ରାର୍ଥୀ ହୋଇ
ତାହାଙ୍କ ନିକଟକୁ ଗଲି ସେ ମୋତେ ଉକ୍ତ ଦରଖାସ୍ତ ଲେଖା ସମ୍ବନ୍ଧରେ ନାନା-
ବିଧ ପ୍ରଶ୍ନ କରିଥିଲେ । ମୁଁ ଯେତେ ପର୍ଯ୍ୟନ୍ତ ଜାଣେ ତହିଁର ଯଥାର୍ଥ ଉତ୍ତର
ଦେଇଥିଲି । ଶେଷରେ କଲେକ୍ଟର ସାହେବ ଦୟାକରି ମୋତେ ମାସିକ ୨୦
ଟଙ୍କାର ଏକ ଗୁମାସ୍ତା କାର୍ଯ୍ୟରେ ନିଯୁକ୍ତ କଲେ । ଛତ୍ରପୁରଠାରେ ମୋତେ
ରହିବା ହେଲା । ଏହି କାର୍ଯ୍ୟରେ ପ୍ରାୟ ୭ ମାସ ଥିଲି । ଗୁମାସ୍ତା କାର୍ଯ୍ୟରେ
ଅସ୍ମାନନମ କାର୍ଯ୍ୟ କରିବାକୁ ପଡୁଥାଏ । ବ୍ୟକ୍ତିଗତ ସ୍ୱାଧୀନତା ପ୍ରତି
ଅଯଥା ଆକ୍ରମଣ ସହ୍ୟ କରି ନ ପାରି ଉକ୍ତ କାର୍ଯ୍ୟ ପରିତ୍ୟାଗ କରି ନିଜ ଗ୍ରାମକୁ
ଚାଲିଗଲି । ଆଉ ଚାକିରି କରିବା ଇଚ୍ଛା ହେଲା ନାହିଁ ।

ନଜର ଗୃହ ସଂସାର କାର୍ଯ୍ୟ ନିର୍ବାହ କରି, ପ୍ରାୟ, ଦୁଇବର୍ଷ କାଳ ନିଜ
ଗ୍ରାମରେ ଅବସ୍ଥାନ କଲି । ମୁଁ ବି. ଏ. ଶ୍ରେଣୀ ଛାତ୍ର ଥିଲାବେଳେ କୌଣସି
ବିଜ୍ଞାପନ ଦେଖି ସବରେଜିଷ୍ଟ୍ରାର କାର୍ଯ୍ୟ ସକାଶେ ଖଣ୍ଡିଏ ଦରଖାସ୍ତ ଫିଙ୍ଗି
ଦେଇଥିଲି, ଚାକିରିର କୌଣସି ସମ୍ଭାବନା ନ ଥିଲା । ବର୍ତ୍ତମାନ ଛତ୍ରପୁର
ରେଜିଷ୍ଟ୍ରି ଅଫିସରେ କାର୍ଯ୍ୟ ଖାଲି ହେବେ ପ୍ରୋବେଶନର ସବରେଜିଷ୍ଟ୍ରାର କାର୍ଯ୍ୟ
ମୋତେ ମାଗି ଦେବାକୁ ମୋହର ବନ୍ଧୁମାନଙ୍କ ଅନୁରୋଧ ଖାଙ୍ଗି ନ ପାରି
୧୯୦୦ ଖ୍ରୀଷ୍ଟାବ୍ଦରେ ଉକ୍ତ ସବରେଜିଷ୍ଟ୍ରାର କାର୍ଯ୍ୟରେ ନିଯୁକ୍ତ ହେଲି । ଛତ୍ରପୁର-
ଠାରେ ପ୍ରାୟ ୩ ବର୍ଷ ମୋଟରେ ଏହି କାର୍ଯ୍ୟରେ ରହିବାକୁ ହେଲା । ଏହି ତିନି-
ବର୍ଷ ମଧ୍ୟରେ ସବରେଜିଷ୍ଟ୍ରାରମାନେ ଛୁଟୀ ନେଇ ଗଲାବେଳେ ସେମାନଙ୍କ
ସ୍ଥାନରେ ଅସ୍ଥାୟୀ ଭାବରେ ସୋମପେଟା, ଆସିକା, ବ୍ରହ୍ମପୁର ଓ ରସୁଲକୁଣ୍ଡା
ସବରେଜିଷ୍ଟ୍ରି ଅଫିସରେ କାର୍ଯ୍ୟ କରିଥିଲି ।

ମୁଁ ଶୁଣିଥାଏ ଯେ ପ୍ରତ୍ୟେକ ଗଭର୍ଣ୍ଣମେଣ୍ଟ କର୍ମଚାରୀ ଉତ୍କୋଚ ଗ୍ରହଣ କରିଥାଆନ୍ତି । ଲାଞ୍ଚର ପ୍ରଲୋଭନରୁ ବଞ୍ଚିବା ବଡ଼ କଠୋର ବ୍ୟାପାର । କୌଣସି ପ୍ରକାରୁ ଲାଞ୍ଚ ଗ୍ରହଣ ନକରି ଗଭର୍ଣ୍ଣମେଣ୍ଟ କାର୍ଯ୍ୟ ସୁଚାରୁରୂପେ ନିର୍ବାହ କରିପାରିବା ଶକ୍ତିର ଆଦର୍ଶ ମୋ ଜୀବନରେ ଦେଖାଇବା ନିମନ୍ତେ ମୁଁ ଦୃଢ଼ ସଂକଳ୍ପ କରି ସରକାରୀ କାର୍ଯ୍ୟରେ ପ୍ରବେଶ କଲି । ମୁଁ ସୋମପେଣ୍ଠାରେ ସବରେଜିଷ୍ଟ୍ରାର ଥିଲାବେଳେ ଏକଦିନ ଏକ ମୁମୂର୍ଷୁବାନ୍ ପକ୍ଷରେ ରେଜେଷ୍ଟ୍ରି କରିବାକୁ ପଡ଼ିଥିଲା । ଏହି ଉଇଲନାମା ରେଜେଷ୍ଟ୍ରି ଭଦ୍ରତ ହୋଇଥିଲେ କୌଣସି ବ୍ୟକ୍ତି ୧୫୦୦୦ ଟଙ୍କା ସମ୍ପତ୍ତିର ଅଧିକାରୀ ହୋଇଥାଆନ୍ତା । ଅନେକ ପ୍ରକାର ସମ୍ଭବପର କାରଣ ଦେଖାଇ ଉକ୍ତ ଉଇଲନାମାର ରେଜେଷ୍ଟ୍ରି ନିରାକରଣ କରି-ଦେବାର ସୁବିଧା ଥିଲା । ସେହି ବ୍ୟକ୍ତି ୧୦୦୦ ଟଙ୍କା ଲାଞ୍ଚର ପ୍ରଲୋଭନ ଦେଖା-ଇଥିଲା । କିନ୍ତୁ ମୁଁ ଏହି ପ୍ରଲୋଭନ ଅତିକ୍ରମ କରି ଯଥାର୍ଥ କଥା ଲେଖି ଉକ୍ତ ଉଇଲନାମା ରେଜେଷ୍ଟ୍ରି କରି ଦେଇଥିଲି ।

ପ୍ରତ୍ୟେକ ଜିନିଷ ଓ ବସ୍ତୁର ଉଜ୍ଜ୍ୱଳ ଏବଂ ଅନ୍ଧକାର ଦୁଇ ଦୁଇ ପାଖ ଥାଏ । ମାନବ ଚରିତ୍ର ଏହିପରି ଦୁଇଭାଗରେ ବିଭକ୍ତ । ମୁଁ ସୋମପେଣ୍ଠାରେ ଅସ୍ଥାୟୀ ସବ୍‌ରେଜିଷ୍ଟ୍ରାର ଥିବାବେଳେ କୌଣସି ଏକ ବେଶ୍ୟାର କୁହୁକରେ କେତେକାଳ ପଡ଼ି ଯାଇଥିଲି । ଏହାହିଁ ମୋର ଦ୍ୱିତୀୟବାର ସ୍ଖଳନ । ସେତେ-ବେଳେ ମୋର ସ୍ତ୍ରୀ ପାଖରେ ଥିଲେ ବୋଧହୁଏ ଏ ବ୍ୟଭିଚାର ଘଟି ନ ଥାନ୍ତା ।

୧୯୦୪ ରେ ମୁଁ ସବ୍‌ରେଜିଷ୍ଟ୍ରାର ରୂପେ ନିଯୁକ୍ତ ହୋଇ ବିଶାଖାପାଟଣା ଜିଲ୍ଲା ପାର୍ବତୀପୁରକୁ ସ୍ଥାନାନ୍ତରିତ ହେଲି । ଏହା ଏକ ତେଲୁଗୁ ପ୍ରଧାନ ସ୍ଥାନ ଥିଲା । ଏଠାରେ କଣ୍ଡପସ୍ଥ ଖଡ଼ୁରି ଏବଂ ହଳୁଆ ଶ୍ରେଣୀର ବ୍ରାହ୍ମଣ ବାସ କରନ୍ତି । ଏହି ଅପରିଚିତ ସ୍ଥାନଟା ପ୍ରଥମେ କିଛି ମାତ୍ର ସୁଖକର ବୋଧ ହେଉ-ନାହିଁ । ଅଭ୍ୟାସ ଯୋଗୁଁ ସବୁ ଅବସ୍ଥା କ୍ରମଶଃ ସହ୍ୟ କରିବାକୁ ହୁଏ ! ଏଠାରେ ଶ୍ରୀଯୁକ୍ତ କୃଷ୍ଣଚରଣ ପାଣି ପୋଲିସ୍ ସ୍କୁଲ୍ ଶିକ୍ଷକ ଥିଲେ । ଏହାଙ୍କ ସହିତ ମୋର ଘନିଷ୍ଠ ବନ୍ଧୁତା ଥିଲା । ଏହାଙ୍କ ସଙ୍ଗରେ ଅହର୍ନିଶ ସଙ୍ଗ ଆଳାପ ହେତୁ ଅନ୍ୟ ଅସୁବିଧାରୁ ସାଙ୍ଗୋର ଯାଇ ପାର୍ବତୀପୁରଟା ସ୍ୱର୍ଗସମ୍ପଦ ସମ ବୋଧ

ହେଲା । ସଂସାରରେ ସମ୍ପଦରେ କାୟମନୋବାକ୍ୟରେ ଦୁଇବ୍ୟକ୍ତିଙ୍କର ପରସ୍ପର ମିଳନ—ଅନ୍ତରର ମିଳନ, ଆତ୍ମାର ଏକଭାବ ଅନୁଭବ କରିବାହିଁ ମର୍ତ୍ତ୍ୟରେ ସ୍ୱର୍ଗ ସମ୍ପଦ ।

"ଆତ୍ମାକୁ ଆତ୍ମା ଯହିଁ ମିଳେ
ମନମାନସରେ ନେ ବିବାହ ।"

ଆଉ ଦୁହିଙ୍କର ପୁଣ୍ୟ କାର୍ଯ୍ୟରେ ବା ପାପ କର୍ମରେ ପରସ୍ପର ସହ ସହଯୁକ୍ତତା, ସହଯୋଗିତା ଓ ସହାନୁଭୂତି ଥାଏ । ଏହି ସ୍ଥାନରେ ମୁଜଫର, ମାକିଣ୍ଟୋସ୍, ଅକଳନ ଅମଳ ଚନ୍ଦ୍ର ଚକ୍ରବର୍ତ୍ତୀଙ୍କ ସହାଳାପରେ ସ୍ପଷ୍ଟରେ ହେବ କହିପାରେ । ନିକଟସ୍ଥ ମଙ୍ଗଳା ବଲସା ଜମିଦାରଙ୍କ ସହିତ ମୋର ସ୍ନେହ ସମ୍ବନ୍ଧ ଅନୁଭବ କରିଥିଲି । ଏହି ଜମିଦାରୀର ରାଜା ମୃତ୍ୟୁଞ୍ଜୟ ସିଂହଙ୍କ ବାହାଦୁର ବୃଦ୍ଧ ହୋଇଯାଇଥିଲେ । ଏହାଙ୍କର ନାତି ଶ୍ରୀ ବିଶ୍ୱେଶ୍ୱର ସିଂହଙ୍କ ବାହାଦୁର ରାଜତ୍ୱ ପାଇବା କଥା ଥିଲା । ରାଜା ମୃତ୍ୟୁଞ୍ଜୟ ସିଂହଙ୍କ ତେଲୁଗୁ କର୍ମଚାରୀମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ଜଣେ ବେଶ୍ୟାର ବଶୀଭୂତ ହୋଇ ସାରିଥିଲେ । ବୃଦ୍ଧ ରାଜାଙ୍କର ମତିର ଅସ୍ଥିରତା ଦେଖି ମୁଁ ତାହାଙ୍କର ବଳବତ୍ ଦସ୍ତାବିଜ ରେଜିଷ୍ଟ୍ରି ନିରାକରଣ କରି ଦେଇଥିଲି । ଏଥିଦ୍ୱାରା ଯୁବରାଜ ବିଶ୍ୱମ୍ଭରଙ୍କର ଅନେକ ଉପକାର ହୋଇଥିଲା । ରାଜ୍ୟଟା ଆଉ ଷଡ଼ଯନ୍ତ୍ର ନ ହୋଇ ଯୁବରାଜଙ୍କର ହସ୍ତଗତ ହୋଇଥିଲା । ଏହି ରେଜିଷ୍ଟ୍ରି ନାମଞ୍ଜୁର ଫଳରେ ବଲସା ମହାରାଜାଙ୍କର କିଛି କ୍ଷତି ହେଲା; ଅର୍ଥାତ୍ ଅଯଥା ଲାଭ ହୋଇ ପାରିଲା ନାହିଁ । ତେଣୁ ତାହାଙ୍କର ନିନ୍ଦାର ପାତ୍ର ହେଲି । ଏଥିପାଇଁ ଲୋକେ ମୋତେ ନାନା ପ୍ରକାର ଭୟ ଦେଖାଉ ଥିଲେ । ପୁଣି କେହି କେହି ମଧ୍ୟ ମୋର ଅପବାଦ ରଟନା କରିବାକୁ ଲାଗିଲେ । ରେଜିଷ୍ଟ୍ରି ନାମଞ୍ଜୁର ହେବା କିଛିଦିନ ପରେ ବୃଦ୍ଧରାଜାଙ୍କର କାଳ ହୋଇଗଲା । କାଳେ ମୁଁ ଅସତ୍ ଲାଭ ଆଶାରେ ପକ୍ଷପାତ ବା ଅନ୍ୟାୟ କରିଥିବି ଭାବି ସ୍ଥାନୀୟ ସବ କଲେକ୍ଟର (ସେତେବେଳେ ଦଲୁ ମାହେବ ବୋଲି ଜଣେ ବଙ୍ଗାଳୀ କଲେକ୍ଟର ଥିଲେ) ଅକସ୍ମାତ୍ ସବରେଜିଷ୍ଟ୍ରି ଅଫିସକୁ ଆସି ରହସ୍ୟଭାବରେ ମୋ ସହିତ ବଲସା ଜମିଦାରଙ୍କ

ପ୍ରତି ସ୍ନେହ ସମ୍ପର୍କ ନ ଥିଲା । ଏହି ଯୁବରାଜ ବଳେଶ୍ୱର ସିଂହଙ୍କ ରେଜେଣ୍ଟି ନାମଞ୍ଜୁର ପରେ ମୋ କାର୍ଯ୍ୟରେ ଅତ୍ୟନ୍ତ ପ୍ରୀତ ହୋଇ "ଆଜୀବନ ଋଣୀ ହୋଇ ରହିଲି, ଉପକାର ଶୁଝି ପାରିବି ନାହିଁ" ବୋଲି କହୁଥାନ୍ତି । କିନ୍ତୁ ମୋତେ ସେ କେବେ କିଛି ଦେଇ ନାହାନ୍ତି । ସେ ମଧ୍ୟ ବହୁକାଳ ବଞ୍ଚିଲେ ନାହିଁ । ତାହାଙ୍କର ଜମିଦାରୀ ନିଲାମ ହୋଇ ଋଣ ପରିଶୋଧ କରିବାକୁ ହେଲା । ଶଙ୍କର ସିଂହ ବାହାଦୁର ନାମରେ ଏହାଙ୍କର ଜଣେ ପିତୃବ୍ୟ ଥିଲେ । ସେ ମୋହର ଖୁବ ଆତ୍ମୀୟ ସଙ୍ଗୀ ଥିଲେ । ଅତିରିକ୍ତ ବ୍ୟୟ ଓ ନଷ୍ଟ ଯୌବନରେ ଏହି ରାଜପରିବାର ଅସ୍ତ ହେବାକୁ ବସିଅଛି !

ପାର୍ବତୀପୁରଠାରେ ମୋତେ ୨ ବର୍ଷ ରହିବାକୁ ପଡ଼ିଲା । ଏହି ସମୟରେ ଆଉ ଏକ ବିଶେଷ ଘଟଣା ଏହି ଯେ ଏଠାରେ ମୁଁ ଏକ ଉତ୍କଳ ବ୍ରାହ୍ମଣ ବାଳ ବିଧବାର ପୁନର୍ବିବାହ କରାଇ ଦେଇଥିଲି । ପଣ୍ଡିଆଗ୍ରାମ ନିବାସୀ ଆର୍ତ୍ତତ୍ରାଣ ମହାପାତ୍ରଙ୍କ ସୁରଙ୍ଗୀଗଡ଼ ନିବାସୀ ଜନୈକ ବ୍ରାହ୍ମଣର ବୈଦେହୀ ନାମ୍ନୀ ଭଗିନୀ ସହିତ ବିବାହ ହୋଇଥିଲା । ଏହି ଦମ୍ପତ୍ତିଙ୍କ ଟ ୫୦୦ରେ ଖଣ୍ଡେ ଭୂମି ଖରିଦ କରି ଦେବାକୁ ହେଲା । ଏହି ଭୂମିର ଖରିଦ, ବିବାହ ଖର୍ଚ୍ଚ, ଏ ଦମ୍ପତ୍ତିଙ୍କ ଭରଣପୋଷଣ ଇତ୍ୟାଦିରେ ମୋହର ପ୍ରାୟ ଏକ ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା । ଖଲ୍ଲିକୋଟ-ଆଠଗଡ଼ ରାଜା ଶ୍ରୀ ହରିହର ମର୍ଦ୍ଦରାଜ ଦେବ, ସମ୍ପାଦକ ନୀଳମଣି ବିଦ୍ୟାରତ୍ନ, ପଣ୍ଡିତ ଗଙ୍ଗାଧର ବିଦ୍ୟାଭୂଷଣ, ଏମାନଙ୍କର କେବଳ ମୌଖିକ ସହାନୁଭୂତି ମିଳୁଥିଲା । କିନ୍ତୁ କାର୍ଯ୍ୟ ବେଳକୁ କେହି ହେଲେ ଦେଖାଦେଲେ ନାହିଁ, ଅର୍ଥ ସାହାଯ୍ୟ ତେଣେ ଥାଉ ।

ପାର୍ବତୀପୁର ନିବାସୀ ଓଡ଼ିଆ ବ୍ରାହ୍ମଣମାନେ ଏଥିରେ ପ୍ରତିବନ୍ଧକ ହେଲେ, ବହୁ ବିଘ୍ନ ଘଟାଇଲେ, ଢେଲାପଥର ଫିଙ୍ଗିଲେ । ତତ୍କାଳୀନ ସ୍ଥାନୀୟ ସବ୍‌କଲେକ୍ଟରର ଦତ୍ତ ସାହେବ ପୋଲିସ ସାହାଯ୍ୟ ଦେଇଥିବାରୁ ସକଳ କାର୍ଯ୍ୟ ସୁନିର୍ବାହିତ ହୋଇଥିଲା । ମଞ୍ଜୁଷା ରାଜଗୁରୁ ରାଜଗୋପାଳାଚାରୀ, ପୋଲିସ୍ ଅଫିସର କୃଷ୍ଣଚରଣ ପାଢ଼ୀ କେବଳ ଏହି ବିବାହ କାଳରେ ସାହାଯ୍ୟ କରିଥିଲେ । କୃଷ୍ଣଚରଣ ବାବୁ ମଧ୍ୟ ଏହି ବିବାହ ଭୋଜିରେ ଯୋଗ ଦେବାକୁ ଡରିଲେ ।

ସେତେବେଳେ ମୋ ପାଖରେ ପୂଜାରୀ ନ ଥିଲେ । ପୁନର୍ବିବାହିତା ବିଧବା ସ୍ତ୍ରୀ ଓ ତାହାର ସ୍ୱାମୀ କିଛିଦିନ ପକାଶେ ମୋ ବସାରେ ଥିଲେ । ସେମାନଙ୍କ ହାତରୁ ମୁଁ ଖାଇଥିବା ଯୋଗୁଁ ମୋର ଜାତିଭ୍ରଷ୍ଟ ହୋଇଥିଲି ବୋଲି କୃଷ୍ଣଚରଣ ବାବୁ ମଧ୍ୟ ପ୍ରକାଶ୍ୟଭାବରେ ମୋତେ ଡାକିନେଇ ତାହାଙ୍କ ଘରେ ଖାଇବାକୁ ଦେଇପାରି ନ ଥିଲେ । ମୋତେ ଦୁଇଦିନ କାଳ ଫଳାହାର ଉପବାସ କରିବାକୁ ପଡ଼ିଥିଲା । ପାର୍ବତୀପୁର ବାସିନ୍ଦା ଓକିଲ ନାରାୟଣ ପାଣିଗ୍ରାହୀ ପ୍ରମୁଖ ଓଡ଼ିଆ ବ୍ରାହ୍ମଣମାନେ ଓ କୃଷ୍ଣବାବୁ ମୋ ପ୍ରତି ଖଡ୍ଗହସ୍ତ ହେଲେ । ଶୁଣାଗଲା ଯେ ସେମାନେ ବାଟଲଗି ଆମ୍ଭ ଦୁହିଁଙ୍କୁ ହାଣି ପକାଇବେ । କିନ୍ତୁ ସବୁବେଳେ ଧର୍ମର ଜୟ ହୋଇଥାଏ । ତେଣୁ କେହି କିଛି କରିପାରି ନ ଥିଲେ । ପାର୍ବତୀପୁରଠାରେ ବହୁକାଳ ମୁଁ ଏକା ଥିଲି । ଏହି ଦୂର ପ୍ରଦେଶକୁ ମୋ ସ୍ତ୍ରୀ ମୋ ପାଖକୁ ଯାଇପାରି ନ ଥିଲେ । ସେତେବେଳେ ମଧ୍ୟ ମୋହର କୌଣସି ଲମ୍ପଟାଗ୍ରଣୀ ବନ୍ଧୁଙ୍କ ପ୍ରବର୍ତ୍ତନାରେ ପଡ଼ି କୌଣସି ବେଶ୍ୟା ସଂସର୍ଗରେ ମୋର ଚରିତ୍ରର ସ୍ଖଳନ ଘଟିଥିଲା ।

୧୯୦୧ ସାଲରେ ମୁଁ ବ୍ରହ୍ମପୁର ସବ ରେଜିଷ୍ଟ୍ରାର ଥିଲାବେଳେ ରମ୍ଭା-ଠାରେ ମୋହର ନୀଳମଣି ବିଦ୍ୟାରତ୍ନଙ୍କ ସହିତ ପ୍ରଥମ ସାକ୍ଷାତ୍ ହେଲା । ତାହାଙ୍କ ସହିତ ମୋହର ଦିନକୁ ଦିନ ଘନିଷ୍ଠ ସ୍ନେହ ସମ୍ବନ୍ଧ ବଢ଼ିବାକୁ ଲାଗିଲା । ସେହି ସମୟରେ ଦିନେ ନୀଳମଣି ବାବୁ, ଶ୍ରୀଯୁକ୍ତ ବଳଭଦ୍ର ମହାପାତ୍ର, ଖଲିକୋଟ ତାଲୁକା ସିରସ୍ତାଦାର ଓ ମୁଁ ଆମ୍ଭେ ତିନିହେଁ ଏକତ୍ର ବିଚାର କରି ବ୍ରହ୍ମପୁରଠାରେ ଏକ ସମ୍ମିଳନୀର ପ୍ରସ୍ତାବ କଲୁ । ପ୍ରସ୍ତାବ କ୍ରମେ ଖଲିକୋଟ-ଅଠଗଡ଼ ରାଜା ଶ୍ରୀ ହରିହର ମର୍ଦ୍ଦରାଜ ଦେବଙ୍କ ସାହାଯ୍ୟରେ କାର୍ଯ୍ୟ ଆରମ୍ଭ ହେଲା । ଅନ୍ୟାନ୍ୟ ଉତ୍କଳ ପ୍ରଦେଶୀୟ ବାବୁମାନେ ନିମନ୍ତ୍ରିତ ହେଲେ । କଟକଠାରୁ ମଧୁବାବୁ ମଧ୍ୟ ଆସି ଏହାକୁ ଅଳଂକୃତ କଲେ । ଏହି ଅଧିବେଶନ ଦିନଠାରୁ ଓଡ଼ିଆମାନଙ୍କର ଜାତୀୟ ଜାଗରଣ ଏବଂ ବିଚ୍ଛିନ୍ନ ଉତ୍କଳର ଏକୀକରଣ ଶକ୍ତି ଆରବ୍ଧ ହେଲା । ଏହି ଅଧିବେଶନ ହିଁ 'ଉତ୍କଳ ସମ୍ମିଳନୀ'ର ବୀଜବପନ କହିଲେ ଅସତ୍ୟ ହେବ ନାହିଁ ।

୧୯୦୨ ଖ୍ରୀଷ୍ଟାବ୍ଦରେ ମୁଁ ରସୁଲକୁଣ୍ଡା ସବ୍ ରେଜିଷ୍ଟ୍ରାର ଥିଲାବେଳେ ସାନଖେମୁଣ୍ଡିର ପୋଡ଼ାମାରି ଗଡ଼ ନିବାସୀ ଶ୍ରୀଯୁକ୍ତ ଗୋପୀନାଥ ରାଜଗୁରୁ ମୋ ସହିତ ସର୍ବଦା ଉତ୍କଳ ଦେଶ ମିଶ୍ରଣରେ ପ୍ରସ୍ତାବ କରୁଥିଲେ । ସେହିଦିନଠାରୁ ବିଚ୍ଛିନ୍ନ ଉତ୍କଳର ସମ୍ମିଶ୍ରଣ ଚିନ୍ତା ମୋ ମନରେ ଦୃଢ଼ୀଭୂତ ହେବାକୁ ଲାଗିଲା । ମୁଁ ଏକଦିନ ବସି ଏକ ସୁଦୀର୍ଘ ଆବେଦନ ପତ୍ର ଲେଖିଲି । ମୋହର ଅନେକ ବନ୍ଧୁଙ୍କ ସହିତ ଉତ୍କଳ ଦେଶମିଶ୍ରଣ ବିଷୟରେ ଆଲୋଚନା କଲି । କେହି କେହି ଅସାଧ୍ୟ ବୋଲି କହିଲେ ପୁଣି କେହି କେହି ହୃଦୟତାର ସହିତ ଯୋଗ ଦେଇଥିଲେ । ଉକ୍ତ ଆବେଦନ ପତ୍ରଟି କଟକ ପଠାଇଲି । ସେଠାରେ ସୁଶିକ୍ଷିତ ବାବୁମାନଙ୍କ ଦ୍ୱାରା ସଂଶୋଧିତ ହୋଇ ଛପାଗଲା । ଭିନ୍ନ ଭିନ୍ନ ସ୍ଥାନର ବନ୍ଧୁମାନଙ୍କ ନିକଟକୁ ତାହା ପଠାଯାଇ ତହିଁରେ ଓଡ଼ିଆମାନଙ୍କର ସ୍ୱାକ୍ଷର ସଂଗୃହୀତ ହେଲା । ଏହି ସମୟରେ ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେଙ୍କ ଯତ୍ନରେ ଏହି ଦେଶ ମିଶ୍ରଣ ବିଷୟ ଘେନି ସେହି ଅଞ୍ଚଳରୁ ଭାରତ ଗଭର୍ଣ୍ଣମେଣ୍ଟ ନିକଟକୁ ଏକ ଆବେଦନ ପତ୍ର ପ୍ରେରିତ ହୋଇଥିଲା । ଗଭର୍ଣ୍ଣର ଜେନେରାଲ୍ ଲର୍ଡ଼ କର୍ଜନ ମହୋଦୟ ଆମ୍ଭମାନଙ୍କର ନିବେଦନ ଶ୍ରବଣ କରି ସମଗ୍ର ଉତ୍କଳଭାଷୀ ପ୍ରଦେଶ ଗଞ୍ଜାମ, ଓଡ଼ିଶା, ସମ୍ବଲପୁର କୌଣସି ପ୍ରାଦେଶିକ ଶାସନାଧୀନରେ ରଖାଯାଇପାରେ କି ନା ଏ ବିଷୟରେ ପ୍ରାଦେଶିକ ଗଭର୍ଣ୍ଣମେଣ୍ଟଙ୍କ ମତ ଜିଜ୍ଞାସା କଲେ । ଗଞ୍ଜାମର କବାହ ଓଡ଼ିଆମାନେ କେତେ କଣାଶୁଣା କଲେହେଁ ଗଞ୍ଜାମ ତେଲୁଗୁ ସ୍ୱରମାନଙ୍କ କୁମନ୍ତ୍ରଣା ଓ କୂଟ କଳ୍ପନା ଯୋଗୁଁ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ଓଡ଼ିଆମାନଙ୍କର ରାଜନୈତିକ ଓ ସମାଜିକ ଦୁଃଖକ୍ଳେଶ, ଅଭାବ ଅସୁବିଧା ହୃଦୟଙ୍ଗମ କରି ନ ପାରିବା କାରଣରୁ ଉତ୍କଳ ସମ୍ମିଶ୍ରଣ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲା ନାହିଁ ।

•

୧୯୦୪ ସାଲରେ ମୁଁ ସୋମପେଣ୍ଠାରେ ଥିଲାବେଳେ ଦେଶହିତୈଷୀ ମହାତ୍ମା ନରସିଂହ ଦାସ (ସେତେବେଳେ ପୁରୁଷୋତ୍ତମପୁର ସବ୍‌ରେଜିଷ୍ଟ୍ରାର ଥିଲେ ।) ଓ ମୁଁ, ଆମ୍ଭେ ଦୁହେଁ ଦେଶମିଶ୍ରଣ ଆନ୍ଦୋଳନରେ ହସ୍ତକ୍ଷେପ କରିଅଛୁ ବୋଲି ଆଶଙ୍କା କରି ମତେ ତେଲୁଗୁ ଏଦେଶ ବିଶାଖାପାଟଣା

ତାଙ୍କ ଅନୁଗତ ଉକ୍ତ ପାର୍ବତୀପୁରକୁ ନେଇଯାଇଥିଲେ । ଶରୀର ଏନା ଆବଦ୍ଧ ବା ଇତସ୍ତତଃ କରାଯାଇପାରେ, କିନ୍ତୁ ମନ ସର୍ବଦା ସ୍ୱାଧୀନ । ସବୁ ସ୍ଥାନରେ, ସକଳ ଅବସ୍ଥାରେ ମନର କାର୍ଯ୍ୟ ମନ କରିପାରେ । ମନର ଭାବନାରେ, ବାସନାରେ ଓ ସଙ୍କଳ୍ପରେ କୌଣସି ପ୍ରତିବନ୍ଧକ ରହିପାରେ ନାହିଁ । ଏହି କାରଣରୁ ମତେ ପ୍ରାୟ ଦୁଇବର୍ଷ କାଳ ପାର୍ବତୀପୁର କାର୍ଯ୍ୟମାନ ଉପଭୋଗ କରିବାକୁ ପଡ଼ିଥିଲା ।

ମୋ ପକ୍ଷରେ ଏକ ସୁଯୋଗ ଘଟିଥିଲା । ଏଠାରେ ଏକ ବାଳ୍ୟ ବିଧବାର ବିବାହ କରାଇ ଦେଇ ପାରିଥିଲି । ଝୁଣ୍ଟୀ ଦୁଃଖ ସୁଖରେ କୃଷ୍ଣଚରଣ ବାବୁଙ୍କ ସଙ୍ଗରେ କାଳକାଟିଥିଲି । ପାର୍ବତୀପୁରଟା ବିଶାଖାପାଟଣା ଜିଲ୍ଲାନ୍ତର୍ଗତ ଥିବାରୁ ଏଠା କୋର୍ଟ କଚେରିମାନଙ୍କରେ ଓଡ଼ିଆ ଭାଷା ଚଳେ ନାହିଁ । ଏଠାରେ ନବାସ ଜଣ ଟେଣ୍ଡେ ଘର କଂସାରୀ ଥିଲେ । ଏମାନେ କେବଳ ଏହି ଗ୍ରାମର ଓଡ଼ିଆ ବାସିନ୍ଦା । ସରକାର ନିୟମ ଅନୁସାରେ ଏମାନଙ୍କୁ ମଧ୍ୟ ଆପଣାର ଦଲିଲ ଦସ୍ତାବିଜ ତେଲୁଗୁ ଭାଷାରେ ଲେଖିବାକୁ ପଡ଼େ ।

ଏକ ବିଶେଷ ଘଟଣା । ଡ୍ରେକ୍ସ ନାମରେ ଜଣେ ମାହେବ ଏଠାରେ ସବ୍ କଲେକ୍ଟର ଥିଲେ । ଏହି ସାହେବ ଦିନେ ସାଢ଼େ ଦଶଟା ସମୟରେ ରେଜିଷ୍ଟ୍ରି କଚେରି ଆଡ଼େ ଆସି ଦେଖିଲେ ଯେ କଚେରି ବନ୍ଦ ଅଛି । ବନ୍ଦଥିବା କଥା ଇନସପେକ୍ଟର ଜେନେରାଲଙ୍କଠାକୁ ଲେଖିଦେଲେ । ସେଦିନ ସକାଳଓକ୍ତ କଚେରିରେ କିଛି ବିଶେଷ କାମ ଥିବାରୁ ମୋତେ ବେଶି କାଳ ରହିବାକୁ ପଡ଼ିଥିଲା । ଏହି କୈଫିୟତ ଦେଇ ନିଷ୍କୃତି ଲାଭ କରିବାକୁ ହେଲା ।

୧୯୦୩-୧୯୦୪ରେ ଛତ୍ରପୁର ଓ ସୋମପେଣ୍ଟରେ ଅସ୍ଥାୟୀ ସବରେଜିଷ୍ଟ୍ରାର ଥିଲବେଳେ ରମ୍ଭାଠାରୁ ଖଲ୍ଲିକୋଟ-ଆଠଗଡ଼ ରାଜା ସ୍ୱର୍ଗୀୟ ହରିହର ମର୍ଦ୍ଦରାଜ ଦେବଙ୍କ ଅନୁକୂଲ୍ୟରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ପ୍ରଜାବନ୍ଧୁ ନାମକ ସାପ୍ତାହିକ ପତ୍ର ବାହାରୁଥିଲା । ସେତେବେଳେ ମଞ୍ଜୁଷା ପଣ୍ଡିତ ଗଦାଧର ବିଦ୍ୟାଭୂଷଣ, ଆଠଗଡ଼ ଜଗନ୍ନାଥପୁର ଶାସନ ନିବାସୀ

ମହାଦେବ ରାଜଗୁରୁ ରାଜ-ପୋଷକତା ପାଇଁ ରମ୍ଭାଠାରେ ଅବସ୍ଥାନ କରୁଥିଲେ । ସେତେବେଳେ ଏମାନଙ୍କ ସହିତ ମୋହର ଘନିଷ୍ଠ ସମ୍ବନ୍ଧ ସ୍ଥାପିତ ହୋଇଥିଲା ।

ନୀଳମଣି ବିଦ୍ୟାରତ୍ନଙ୍କ ପ୍ରସ୍ତାବ ଓ ବିଦ୍ୟାଭୂଷଣ ଆଦି ପଣ୍ଡିତ ମାନଙ୍କ ସାହାଯ୍ୟ ଓ ଅନୁମୋଦନ କ୍ରମେ ରମ୍ଭା ଛାପାଖାନାରୁ ସଂସ୍କାରକ ନାମକ ଏକ ମାସିକ ପତ୍ର ପ୍ରକାଶର ଯୋଗାଡ଼ କରାଗଲା । ଏହି ସଂସ୍କାରକ ପ୍ରକାଶର ପ୍ରାଥମିକ ବ୍ୟୟଭାର ମୁଁ ବହନ କରିବାକୁ ସ୍ୱୀକାର କଲି । ମୋ ପାଖେ ଟଙ୍କା ନ ଥିଲା । ମହାର ଆସି ଗଙ୍ଗାପାଣି ପଣ୍ଡାଙ୍କଠାରୁ ଦେଢ଼ଶତ ଟଙ୍କା ଋଣ କରି ନେଲି । ସଂସ୍କାରକ ବାହାରିଲା । ଗଦାଧର ବିଦ୍ୟାଭୂଷଣ ତହିଁରେ ସମ୍ପାଦକ ଏବଂ ମହାଦେବ ରାଜଗୁରୁ କୋଷାଧ୍ୟକ୍ଷ ହେଲେ । ଏହି ପତ୍ର ଖଣ୍ଡିକ ଏକବର୍ଷ ପର୍ଯ୍ୟନ୍ତ ବାରମାସରେ ବାରଟା ସଂଖ୍ୟା ବାହାରିଥିଲା । ସଂସ୍କାର ପ୍ରୟାସୀ ଅନେକ ଗଣ୍ୟମାନ୍ୟ ଲୋକ ଏହାର ଲେଖକ ହେଲେ ।

•

ଏହି ସମୟରେ ଏହି ସଂସ୍କାରକ ବିରୋଧରେ ବଡ଼ଖେମୁଣ୍ଡିଗଡ଼ଠାରୁ ସେଠା ରାଜାଙ୍କ ଆନୁକୂଲ୍ୟରେ ପଣ୍ଡିତ କାଶୀନାଥ ରାଜଗୁରୁଙ୍କ ସମ୍ପାଦକତ୍ୱରେ 'ସମାଜମିତ୍ର' ନାମରେ ଏକ ମାସିକ ପତ୍ର ବାହାରିଲା । ଏଥିରେ ବିଦ୍ୟାରତ୍ନ ଓ ମୋ ନାମରେ ମାତ୍ରାନୁଚିତ ବିଦ୍ରୂପ, ଗାଳି ଇତ୍ୟାଦି କରାଗଲା । କିଛି କାଳ ପରେ 'ସଂସ୍କାରକ' ସଙ୍ଗେ ସଙ୍ଗେ 'ସମାଜମିତ୍ର' ମଧ୍ୟ ଲୁପ୍ତ ହେଲା । ରମ୍ଭାଠାରୁ ସଂସ୍କାରକର ପ୍ରକାଶ, ପୁଣି ପାର୍ବତୀପୁରଠାରେ ଏକ ବିଧବାର ବିବାହ—ଏହି ଦୁଇ ଘଟଣା ଯୋଗୁଁ ମୁଁ ସଂସ୍କାର ପ୍ରୟାସୀ ନାମରେ ପରିଚିତ ହୁଏ ଏବଂ ରକ୍ଷଣଶୀଳ ଲୋକମାନଙ୍କ ଦ୍ୱାରା ବିଦ୍ରୂପିତ ହେଉଥାଏ । ୧୯୦୫ ଜୁଲାଇରେ ଯେତେବେଳେ ପାର୍ବତୀପୁରଠାରୁ ପୁରୁଷୋତ୍ତମପୁରକୁ ମୋର ସ୍ଥାନାନ୍ତର ହେଲା ସେତେବେଳେ ପୁରୁଷୋତ୍ତମପୁରରେ ବିଧବା ବିବାହକାରୀ ସଂସ୍କାରକ ବୋଲି ମୋ ପ୍ରତି ସମସ୍ତେ ଅଙ୍ଗୁଳି ନିର୍ଦ୍ଦେଶ କଲେ । ମୋହର ଯଦି ସରକାରୀ କର୍ମଚାରୀର କ୍ଷମତା ନ ଥାନ୍ତା, ବୋଧହୁଏ ଏଠାର ବ୍ରାହ୍ମଣମାନେ ମୋ ପ୍ରତି ବିଦ୍ୱେଷ ରଖି ମୋ ଉପରେ ଟେକା ପଥର ଫିଙ୍ଗିଥାନ୍ତେ ।

ଆର୍ତ୍ତି ମହାପାତ୍ର ନାମକ ବିଧବା ବିବାହ କରିଥିବା ଲୋକର ଘର ପୁରୁଷୋତ୍ତମପୁର ନିକଟ ପାଣ୍ଡିଆ ଗ୍ରାମରେ । ତାହାର ବଂଶ ଓ ଜ୍ଞାତିଲୋକ ପୁରୁଷୋତ୍ତମପୁରରେ ଥିଲେ । ଏହି ଦମ୍ପତି ନିମନ୍ତେ ନିକଟବର୍ତ୍ତୀ କୁମାଣ୍ଡି ଗ୍ରାମରେ ଭୂମି ନିଆ ଯାଇଥିଲା । ଏହିସବୁ କାରଣରୁ ପୁରୁଷୋତ୍ତମର ବ୍ରାହ୍ମଣମାନେ ମୋ ପ୍ରତି ବିରକ୍ତ ଓ ଖଡ଼ଗହସ୍ତ ଥିଲେ ।

ସେ ସମୟରେ ଆମ୍ଭ ପଡ଼ିଶା ଘରେ ଏକ ବିଧବା ନିବାସ କରିଥାଏ । ତାହାର ଏକ ବାଳ-ବିଧବା କନ୍ୟା ଥାଏ । ମୁଁ ପୁରୁଷୋତ୍ତମପୁରଠାରେ ରହିବା ଦେଖି ସେହି ବିଧବା ତାର ବିଧବା ଝିଅଟିକୁ ଅନ୍ୟଗ୍ରାମକୁ ପଠାଇ ଦେଲେ । ସେ ଏହି ଶଙ୍କା କଲା ଯେ ଏ ସଂସ୍କାରକ ଲୋକ କାଳେ ମୋ ଝିଅକୁ ବାହା କରିଦେବ । ଏହି ଗ୍ରାମର ଗଣ୍ୟମାନ୍ୟ ଲୋକମାନେ ନିତାନ୍ତ ସ୍ୱାର୍ଥପର, ପରଧନାଶୀ, ଜାତୀୟ ଉନ୍ନତି ଓ ଲୋକୋପକାର କାର୍ଯ୍ୟରେ ଏକାନ୍ତ ଉଦାସୀନ ଏବଂ ସଂସ୍କାର କାର୍ଯ୍ୟରେ ପ୍ରଧାନ ବିରୋଧୀ। ଏମାନେ ମୋ ସଙ୍ଗେ ନାନାବିଧ ସଂସ୍କାର ପ୍ରସ୍ତାବ କରନ୍ତି । ସଂସ୍କାର କରିବାକୁ ଦୃଢ଼ ପ୍ରତିଜ୍ଞା କରନ୍ତି, କିନ୍ତୁ ପରୋକ୍ଷରେ ମୋର ନିନ୍ଦାକରି ମୋର କାର୍ଯ୍ୟରେ ପ୍ରଧାନ ପ୍ରତିବନ୍ଧକ ହୁଅନ୍ତି । ଏଠାର ଶିକ୍ଷିତ ଲୋକମାନେ ମଧ୍ୟ ଅତ୍ୟନ୍ତ ଉଦାସୀନ ।

ମୁଁ ରମଲକୁଣ୍ଡାଠାରେ ୧୯୦୨ ସାଲରେ ଅସ୍ଥାୟୀ ସବ ରେଜିଷ୍ଟ୍ରାର ଥିଲାବେଳେ ସେଠାରେ କେତେଜଣ ବନ୍ଧୁଙ୍କୁ ନେଇ ବିଧବା ବିବାହ ସଂସ୍କାରର କିଛି ଆନ୍ଦୋଳନ କରିଥିଲି । ଧୂଆଁଗୁସ୍ତୀ ପଣ୍ଡିତ ହୃଦେହର ଦାଶ, ହରିହର ତ୍ରିପାଠୀ (ବର୍ତ୍ତମାନ ଦରବାର ସଦସ୍ୟ) ପାଟ୍ଟଲୀସାହି ନିବାସୀ ବିନାୟକ ମହାପାତ୍ର ଏହି ତିନି ଜଣଙ୍କୁ ନେଇ ନାନାବିଧ ସ୍ମୃତିର ଉଦଘାଟନ ପୂର୍ବକ ବିଧବା ବିବାହ ସପକ୍ଷରେ ଏକ ଦୀର୍ଘ ପ୍ରବନ୍ଧ ରଚନା କରି କଟକ ବିଶ୍ୱନାଥ ବାବୁଙ୍କ ଦ୍ୱାରା ଛପାଇ ସମଗ୍ର ଉତ୍କଳ ଦେଶର ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କ ନିକଟକୁ ପଠାଇ ଉକ୍ତ ସଂସ୍କାର ପ୍ରତି ସେମାନଙ୍କର ସାହାଯ୍ୟ ସହାନୁଭୂତି ଭିକ୍ଷା କରିଥିଲୁ । ଏଥିରେ ମୋହର ଶାରୀରିକ ଓ ମାନସିକ ପରିଶ୍ରମ ବାହାରେ ୨୫ ଟଙ୍କା ପର୍ଯ୍ୟନ୍ତ

ଖର୍ଚ୍ଚ ହୋଇଥିଲା । କିନ୍ତୁ ତାହାର କିଛି ସାହାଯ୍ୟ ବା ସହାନୁଭୂତି ଦେଖାଗଲା ନାହିଁ । ଏହି ସଂସ୍କାର ପ୍ରତି ଯେତେବେଳେ ଶିକ୍ଷିତ ବ୍ୟକ୍ତିମାନେ ଉଦାସୀନ, ଅଶିକ୍ଷିତ ସାଧାରଣଙ୍କଠାରୁ ସହଯୋଗିତା ଆଶା କରିବା ବାତୁଳତା ମାତ୍ର । ପୁରୁଷୋତ୍ତମପୁର ସଂସ୍କାର ବିରୋଧୀ ହେବା ବିଚିତ୍ର ନୁହେଁ ।

ପୁରୁଷୋତ୍ତମପୁର ଗ୍ରାମର ଲୋକେ ବହୁକାଳରୁ ତେଲୁଗୁ ଆଧିପତ୍ୟ ସ୍ୱୀକାର କରି ଆସୁଥିଲେ । ନିଜ ମାତୃଭାଷା ପ୍ରତି ଏମାନଙ୍କର ଭକ୍ତି ନଥାଏ । ଅଧା ତେଲୁଗୁ ଅଧା ଓଡ଼ିଆ କରି କଥା କହନ୍ତି । ତେଲୁଗୁ ଅକ୍ଷରରେ ସ୍ୱାକ୍ଷର କରି ଜାଣିଲେ, ମାମଲାମକଦମା, ଦାବା, ଦରବାରକୁଶଳୀ ହେଲେ ଆପଣାକୁ ଗଣ୍ୟମାନ୍ୟ ପଣ୍ଡିତ ଜ୍ଞାନ କରନ୍ତି । ଏମାନଙ୍କଠାରେ ସ୍ୱଜାତୀୟ ଅଭିମାନ ଦେଖାଯାଉ ନଥିଲା । ଏଠାରେ ଅନେକ ଧନୀଲୋକ ନିବାସ କରନ୍ତି । ଏମାନଙ୍କ ମଧ୍ୟରୁ ବଟକୃଷ୍ଣ ମହାପାତ୍ର ଜଣେ ମାତ୍ର ଇଂରାଜୀ ଭାଷାରେ ଉଚ୍ଚ ଶିକ୍ଷା ପ୍ରାପ୍ତ ହୋଇଥିଲେ । ଏଠାର ଲୋକମାନେ ତେଲୁଗୁ ସହବାସରେ ରହି ମନରୁ ଆପଣାର ଜାତୀୟ ଭାବ ପାଶୋରି ପକାଇଛନ୍ତି । ମୋର ପୂର୍ବବର୍ତ୍ତୀ ସବ୍‌ରେଜିଷ୍ଟ୍ରାର ଶ୍ରୀଯୁକ୍ତ ନରସିଂହ ଦାଶ ବହୁ ଶ୍ରମ ସ୍ୱୀକାର କରି ଏଠାରେ 'ସର୍ବଜନ ରଙ୍ଗାଳୟ' ନାମକ ଏକ ନାଟ୍ୟଶାଳା ସ୍ଥାପନ କରିଥିଲେ । ଗ୍ରାମ କରଣ ପିଣ୍ଡିକ ପଟ୍ଟନାୟକ ଏବଂ ଦୋକାନ ବ୍ୟବସାୟୀ, ମିଣ୍ଡିକେତନ ପାତ୍ର, ନାଟକ ଦଳର ପ୍ରଧାନ ଲୋକ ଥିଲେ । ନରସିଂହ ଦାଶ ଏହି ସ୍ଥାନରେ ପ୍ରାୟ ବାରବର୍ଷ ଥିଲେ । ଏହାଙ୍କର ସ୍ଥାନାନ୍ତରରେ ବହୁଲୋକ ଦୁଃଖିତ ହେଲେ । ମୁଁ ଏଠାରେ ଏହାଙ୍କ ସ୍ଥଳାଭିଷିକ୍ତ ହୋଇ ନାଟକାଦି ସମସ୍ତ ଅନୁଷ୍ଠାନରେ ଯଥାସାଧ୍ୟ ଯୋଗ ଦେଉଥାଏ । ଏହି ସମୟରେ 'ଶଶିକଳା ପରିଣୟ' ନାମରେ ବୁଧବା ବିବାହର ପୋଷକତା କରି ନାଟକ ରଚନା କରିଥିଲି । ଏହି ନାଟକଟି ଥରେ ମାତ୍ର ଏହି ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା । ଏଥିରେ ସାମାଜିକ ଅନେକ ଦୁର୍ନୀତିର ପ୍ରକାଶ ପାଇବା ଦେଖି ଅନେକ ରକ୍ଷଣଶୀଳ କୁସଂସ୍କାର ବ୍ରାହ୍ମଣ ରଙ୍ଗାଳୟ ପରିତ୍ୟାଗ କରି ଯାଇଥିଲେ । ପୁଣି ଅନେକ ମୋ ପ୍ରତି ବିରକ୍ତ ହୋଇଥିଲେ । ଏମାନଙ୍କ ଆକ୍ଷେପ ପ୍ରତି, ବ୍ୟବହାର ପ୍ରତି ମୋର

ଭ୍ରୂକ୍ଷେପ ନଥିଲା । ଏଠା ଲୋକଙ୍କ ଆଗ୍ରହ ମତେ ସୁଖ ଲାଗେ ନାହିଁ । ଅନେକବାର ଛୁଟି ନେଇ ବାହାର ଯାଇଥାଏ । ଏହି ଗ୍ରାମରୁ ସ୍ଥାନାନ୍ତରିତ ହେବାପାଇଁ ବହୁ ଚେଷ୍ଟା କରୁଥାଏ । ବିଧବାର ପାଣି ଗ୍ରହଣ କରିଥିବା ଆର୍ତ୍ତ ମହାପାତ୍ରଙ୍କ ସ୍ତ୍ରୀ ବୈଦେହୀ ସହିତ ଏଠାରେ କିଛିକାଳ ନିବାସ କରିଥିଲି । ଏଠାରେ ଲୋକମାନେ ଏହି ଦମ୍ପତି ପ୍ରତି ଖଡ଼୍ଗହସ୍ତ ଥାଆନ୍ତି । କିନ୍ତୁ ମୋ ଉପସ୍ଥିତିରେ ସେମାନେଙ୍କର କିଛି କ୍ଷତି କରି ପାରି ନଥାନ୍ତି ।

ଆମ ଭଣ୍ଡାରୀ ଦାଶରଥି ସାମନ୍ତରାୟ ନିତାନ୍ତ ଗରିବ ହୋଇ ଏକାନ୍ତ ଅନ୍ନବସ୍ତ୍ରକ୍ଳିଷ୍ଟ ହେବା ଦେଖି ଆସିକା ଓକିଲ ଦଶହର ପଣ୍ଡାଙ୍କଠାରୁ କରଜ କରି ଏହାଙ୍କୁ ଟ୨୦୦୦ ଦେଇଥିଲି । ଏ ଜଣେ ବିଳାସୀ, ଆଳସ୍ୟ ପରାୟଣ ଓ ଅଯଥା ବ୍ୟୟଶୀଳ ବ୍ୟକ୍ତି ଥିବାହେତୁ ମୋର ସାହାଯ୍ୟ ପାଇ ସୁଦ୍ଧା କୌଣସି ଉନ୍ନତି କରିପାରି ନ ଥିଲେ । ଏହାଙ୍କ ପ୍ରତି ମୋହର ସାହାଯ୍ୟ ଦାନଟା ପାଉଁଶରେ ଘିଅ ଢାଳିବା ପରି ହୋଇଥିଲା । ଜଣକୁ ଜଣେ କିଛି କରି ଦେଇ ନପାରେ । ଯାହାର କର୍ମଫଳ ସେ ଅବଶ୍ୟ ଭୋଗକରେ ।

ପୁରୁଷୋତ୍ତମପୁରଠାରେ ବାଳିକାମାନଙ୍କ ଶିକ୍ଷା ସକାଶେ କୌଣସି ବିଦ୍ୟାଳୟ ନଥିଲା । ସ୍ତ୍ରୀ ଶିକ୍ଷା ହିଁ ସାମାଜିକ ଉନ୍ନତିର ମୂଳ ଭିତ୍ତି । ବାଳିକାମାନଙ୍କୁ ବିଦ୍ୟାଶିକ୍ଷା ଦିଆ ନଗଲେ ସମାଜ ସଂସାର ବା ଦେଶର ଉନ୍ନତି ସାଧନ କରିହେବା ଅସମ୍ଭବ । ଏହାଭାବି ମୁଁ ଏହି ଗ୍ରାମରେ ଏକ ବାଳିକା ବିଦ୍ୟାଳୟ ସ୍ଥାପନ କରିବାକୁ ବହୁ ଚେଷ୍ଟାକଲି । ଅମୃତିଆ ସାହିରେ ଗୋଟିଏ କୋଠାଘର ଥିଲା । ତହିଁର ଏକ ଅଂଶରେ କେହିଜଣେ ଦୋକାନ ଖୋଲିଥିଲା । ଅନ୍ୟ ଅଂଶଟା ଖାଲି ପଡ଼ିଥିଲା । ସେହି ଦୋକାନ ସେଠାରୁ ଉଠାଇ ନେଇ ଘରଟା ମରାମତି କରିଦେଇ ତହିଁରେ ବାଳିକା ବିଦ୍ୟାଳୟ ସ୍ଥାପନ କଲି । ମୃତ୍ୟୁଞ୍ଜୟ ପଟ୍ଟନାୟକ ଓ ବ୍ରଜସୁନ୍ଦର ପଟ୍ଟନାୟକ କିଛି କିଛି ପଢ଼ାଶୁଣା କରି ଅକର୍ମୀ ହୋଇ ବୁଲୁଥିଲେ । ଏହି ଦୁଇଜଣଙ୍କୁ ଶିକ୍ଷକ ରୂପେ ନିଯୁକ୍ତ କରାଗଲା । ସାଧାରଣ ଏହାଙ୍କୁ ଟଙ୍କା ୫ ମୁଁ ଦିଏ ୫ ଟଙ୍କା, ଏହାପର ଦଶଟଙ୍କା ମାସିକ ବ୍ୟୟରେ ସେ

ସ୍କୁଲଟି ପରିତ୍ୟକ୍ତ ହେଲା । ତେଲୁଗୁ ଛାତ୍ରୀମାନେ ଯାଚ ହୋଇ ପାଠ ପଢ଼ି ଆସନ୍ତି । କିନ୍ତୁ ଓଡ଼ିଆ ଛାତ୍ରୀମାନେ ଧରିଲେ ବି ଆସୁଥିଲେ ନାହିଁ । ଓଡ଼ିଆ ବାଳିକାମାନଙ୍କୁ କଣେଇ ଫୋଁଥିପତ୍ର, ମିଠାଇ ଇତ୍ୟାଦି ଦେଇ ସଂଗ୍ରହ କରିବାକୁ ଯତ୍ନେ । ବଜାର ସାହି ନର୍ଦ୍ଦମା ଲୋକାଲ ଫଣ୍ଡ ବଙ୍ଗଳା ନିକଟରେ ସରକାରଙ୍କର ଏକ ପାଉଣ୍ଡଘର ବା କାଞ୍ଜି ହାଉସ ଥିଲା । କାଞ୍ଜି ହାଉସ ଅନ୍ୟ ସ୍ଥାନକୁ ଘୁଞ୍ଚିଗଲା । ଜିଲ୍ଲାବୋର୍ଡ଼ ପ୍ରେସିଡେଣ୍ଟ ଓ କଲେକ୍ଟର ସାହେବଙ୍କ ଅନୁମତି ପାଇ ସେହି ଘରଟାର ଯଥା ସମ୍ଭବ ପରିବର୍ତ୍ତନ ଓ ମରାମତି କରିଦେଇ ତହିଁରେ ଉକ୍ତ ବାଳିକା ବିଦ୍ୟାଳୟ ସ୍ଥାପନ କଲି । ବେଞ୍ଚ, ଚଟାଇ ଇତ୍ୟାଦି ଉପକରଣ ଯୋଗାଇ ଦେଲୁ । କିନ୍ତୁ ସ୍ତ୍ରୀ ଶିକ୍ଷା ବିରୋଧୀ କେହି ଦୁଷ୍ଟଲୋକ ନିଆଁ ଲଗାଇ ଦେଇ ଉକ୍ତ ଘରଟାକୁ ପୋଡ଼ି ପକାଇଲେ । ତାପରେ ପୁଣି କିଛିଟଙ୍କା ଖର୍ଚ୍ଚ କରି ଉକ୍ତ ଘର ତିଆରି କରିବାକୁ ପଡ଼ିଲା । ଏହିପରି ଅନେକ ବାଧା ବିଘ୍ନ, ବିଦ୍ରୂପ ଓ ଅଣ୍ଟା ଉପହାସ ଅତିକ୍ରମ କରି ବିଦ୍ୟାଳୟଟିକୁ ବଞ୍ଚାଇ ରଖିଥିଲୁ । ଏହି ସମୟରେ ବାଳିକାସ୍କୁଲ ସମୂହର ଇନସ୍‌ପେକ୍ଟ୍ରେସ୍ ମହୋଦୟାଙ୍କ ଶୁଭଦୃଷ୍ଟି ପଡ଼ିଲା । ଉକ୍ତ ସ୍କୁଲଟି ସରକାରୀ ସ୍କୁଲରୂପେ ଗୃହୀତ ହେଲା । ସେଥି ସକାଶେ ଆମ୍ଭମାନଙ୍କୁ ଆଉ ଚିନ୍ତା ବା ବ୍ୟସ୍ତ ହେବାକୁ ପଡ଼ିଲା ନାହିଁ । ଈଶ୍ୱର ସର୍ବଦା ସର୍ବତ୍ର ସତ୍କାର୍ଯ୍ୟର ସହାୟ ହୁଅନ୍ତି । ଏହି ସ୍କୁଲ ସ୍ଥାପନରେ ମତେ ପ୍ରାୟ ଟ ୨୦୦୯ ଖର୍ଚ୍ଚ କରିବାକୁ ପଡ଼ିଥିଲା । ପୁଣି ଦୁଇବର୍ଷକାଳ ଚିନ୍ତା ଓ ପରିଶ୍ରମ କରିବାକୁ ପଡ଼ିଥିଲା । ପରିଶେଷରେ କୃତକାର୍ଯ୍ୟ ହୋଇ ଆତ୍ମପ୍ରସାଦ ଲାଭ କରିବାକୁ ହେଲା । ଦୟାମୟ ପରମେଶ୍ୱରଙ୍କ କୃପାରୁ ସଙ୍କଳ୍ପ ସିଦ୍ଧ ହେଲା । ଅନୁଷ୍ଠାନଟି ସଫଳ ହେଲା ।

ପୁରୁଷୋତ୍ତମପୁରଠାରେ ଅବସ୍ଥାନ କରୁଥିବାବେଳେ ଛଅମାସ ସକାଶେ ଦୀର୍ଘଛୁଟୀ ନେଇ ତୀର୍ଥଯାତ୍ରା କରିଥିଲୁ । ଗୟା କାଶୀ ଏବଂ ପ୍ରୟାଗ ପର୍ଯ୍ୟନ୍ତ ଯାଇ ଫେରିଥିଲୁ । ଆହ୍ଲାବାଦଠାରେ ମୋର ସ୍ତ୍ରୀଙ୍କର ଚକ୍ଷୁରେ ପୀଡ଼ା ହେବାରୁ ଆଉ ଦୂରକୁ ଯାଇ ନପାରି ସେଠାରୁ ଫେରିଥିଲୁ । ଏହି ତୀର୍ଥ ଯାତ୍ରାରେ ବେଣିପଲ୍ଲୀ ରଘୁନାଥ ପାଳ, ସାଦର ଗ୍ରାମ ନିବାସୀ ଫକୀର ମହାପାତ୍ର

ସେମାନଙ୍କ ସ୍ତ୍ରୀମାନଙ୍କୁ ସଙ୍ଗରେ ନେଇ ମୋହର ସହଯାତ୍ରୀ ହୋଇଥିଲେ । ଆମ୍ଭମାନଙ୍କର ଏହି ତୀର୍ଥଯାତ୍ରା ବୃତ୍ତାନ୍ତ ଉକଳ ସାହିତ୍ୟରେ ପ୍ରକାଶ କରିଥିଲି ।

୧୯୦୭ ସାଲ ଜୁନ ମାସରେ ଛୁଟୀ ନେଇ ଜନେଇଙ୍କ ଶ୍ରାଦ୍ଧ କରିବା ସକାଶେ ପରିବାର ସହ ପୁରୀ ଗଲି । ଏହି ସମୟରେ ଚନ୍ଦନ ଯାତ୍ରା ହେଉଥାଏ । ଶ୍ରାଦ୍ଧ ଅପେକ୍ଷା ଚନ୍ଦନ ଯାତ୍ରାରେ ବେଶୀ ମନ ଥିଲା । ଆମ ଘରେ ଶ୍ରାଦ୍ଧ ଉତ୍ସବରେ ଜ୍ଞାତି ଓ ନିକଟ ବନ୍ଧୁମାନଙ୍କୁ ଡାକି ଭୋଜନ ଦେବା ପୂର୍ବ୍ବ ବ୍ରାହ୍ମଣମାନଙ୍କୁ ଡାକି ଭୋଜନ ଦେବା ରୀତି ଚଳ ପ୍ରଚଳିତ । ଏଥିରେ ପ୍ରାୟ ୫୦ । ୬୦ ଟଙ୍କା ଖର୍ଚ୍ଚ ହୁଏ । ଏହି ବ୍ୟୟଟା ବାଧେନାହିଁ, କିନ୍ତୁ ଏଥିରେ ଯେଉଁ ବୃଥା ହଇରାଣ, କ୍ଳେଶ ଓ ମନସ୍ତାପ ଭୋଗ କରିବାକୁ ପଡ଼େ ତାହା କେବଳ ବାଞ୍ଛନୀୟ ନୁହେଁ । ଅବିଦ୍ୟ, ଅର୍ଥଲୋଭୀ, ଶୈଣ୍ଡୋଦର ପରାୟଣ ଶାସନୀ ବ୍ରାହ୍ମଣମାନଙ୍କୁ ବରଣ କରି ଆଣି ଭୋଜନ ଦେବାକୁ ହୁଏ । ଏମାନେ ଭୋଜନ ସମୟରେ ଲୁଚି ଛପି କଳାକଳିଆ କରି ଉଚ୍ଛିଷ୍ଟ ସାମଗ୍ରୀ ବୋହି ନେବାକୁ ଶଙ୍କିତ ଓ ଲଜ୍ଜିତ ହୁଅନ୍ତି ନାହିଁ । ଶାସନ ବ୍ରାହ୍ମଣମାନଙ୍କର ବିଦ୍ୟା ବିଭବ, ସମ୍ମାନ ଗୌରବ ସବୁ ଗଲାଣି । ଏମାନେ ଆଜି ମୂର୍ଖ ନିରକ୍ଷର, ଲୋଭୀ କୃଷିଜୀବୀ, ଦ୍ୱେଷହିଂସାକାତର, ତାମସୀ ଓ ନାମଧାରୀ ବ୍ରାହ୍ମଣ । ଦ୍ୱାରେ ଦ୍ୱାରେ ଭିକ୍ଷା ମାଗିବା ଏବଂ ପ୍ରେତ ସାମଗ୍ରୀ ଖାଇ ବୁଲିବା ହିଁ ଏମାନଙ୍କର ବୃତ୍ତି ବା ଜୀବିକା । ଏମାନଙ୍କୁ ଭୋଜନ ଦେବାରେ ପୁଣ୍ୟ ନାହିଁ ବରଂ ପାପ ଅର୍ଜ୍ଜନ କରିବାକୁ ହୁଏ । ପୁରୀଠାରେ ଅନ୍ନ ପକ୍ଷ ଦୃଷ୍ଟି ବା ସ୍ପର୍ଶ ଦୋଷ ଧରାଯାଏ ନାହିଁ । ଗୋପାଳ ବା ନାପିତ ହସ୍ତରେ କିଛି କିଛି ଅନ୍ନ କିଣି ନେଇ ମାର୍କଣ୍ଡେୟାଦି ତୀର୍ଥ ସ୍ଥାନରେ ଶ୍ରାଦ୍ଧ କରିଦେଲେ ହୁଏ । ପୁରୀ ଶ୍ରାଦ୍ଧ ପଦ୍ଧତି ମଧ୍ୟ ସରଳ, ସଂକ୍ଷିପ୍ତ ଏବଂ ସାରଗର୍ଭକ । ଏଠା ଶ୍ରାଦ୍ଧ ବିଧାନରେ ବ୍ୟୟ ସଂକୋଚ ସଙ୍ଗେ ସଙ୍ଗେ ସୁବିଧା ଓ ସୁଖ ସ୍ୱାଚ୍ଛନ୍ଦ୍ୟ ଲାଭ ହୁଏ । ପୁରୀଠାରେ ପାଞ୍ଚଦିନ ରହିଲୁ । ଏହି ପୁଣ୍ୟକ୍ଷେତ୍ରରେ ବିଦେଶୀ ଯାତ୍ରୀ ସ୍ତ୍ରୀମାନଙ୍କ ପ୍ରତି କଠୋର ଅବରୋଧ ପ୍ରଥା ପାଳିତ ହୁଏ ନାହିଁ । ମୁଁ ମୋହର ସ୍ତ୍ରୀ ସହିତ ଦିନ-ରାତି ବଡଦେଉଳ ଠାରେ, ସାଗର ତୀରରେ କିମ୍ବା ବଜାରରେ ଅବାଧରେ

ଭ୍ରମଣ କରୁଥାଏ । ଆମ ଦେଶରେ ସ୍ତ୍ରୀରତ୍ନଠାରୁ ସ୍ୱାଧୀନତାଜ୍ୟୋତି ଅପହୃତ ହୋଇଅଛି । ସେମାନେ ଅନ୍ଧାର କୋଣେ ପଡ଼ି ସଡ଼ି ଯାଉଛନ୍ତି । କେବଳ ପୁଣ୍ୟକ୍ଷେତ୍ର ତୀର୍ଥ ସ୍ଥାନ ମାନଙ୍କରେ ଟିକିଏ ନିଶ୍ୱାସ ଛାଡ଼ି ସ୍ୱାତନ୍ତ୍ର୍ୟ ହକକାରେ ମୁକ୍ତ ପ୍ରଦେଶରେ ଇଚ୍ଛା ସୁଖେ ବିଚରଣ କରିବାକୁ ସମୟ, ସୁବିଧା ଏବଂ ଅଧିକାର ପାଉଥାନ୍ତି ।

ଆମ୍ଭେମାନେ ପୁରୀରେ ପାଞ୍ଚଦିନ ମାତ୍ର ରହିଥିଲୁ । ଏକଦିନ ମୁକ୍ତିମଣ୍ଡପ ଦର୍ଶନ କରିବାକୁ ଯାଇ ଦେଖିଲୁ ଯେ କେତେଜଣ ନିରକ୍ଷର ମୂର୍ଖ ବ୍ରାହ୍ମଣ ମଣ୍ଡପ ଉପରେ ବସି ଯାତ୍ରୀମାନଙ୍କଠାରୁ ପଇସା ଭଣ୍ଡି ନେଇ ମଣ୍ଡପରେ ସେମାନଙ୍କର ମୁଣ୍ଡ ଲଗାଇ ଦେଉଥାନ୍ତି । ତୃନ ପଥର ମଣ୍ଡପରେ ମୁକ୍ତି ନ ଥାଏ । ମୁକ୍ତିମଣ୍ଡପ ଉପରେ ପଣ୍ଡିତମାନେ ବସି ଲୋକମଙ୍ଗଳ କାମନାରେ ଯେଉଁ ବ୍ୟବସ୍ଥା ଦିଅନ୍ତି ତାହାହିଁ ମୁକ୍ତିଦାୟକ । ଶୁଣି ପାରିଲୁ ଯେ ନିରକ୍ଷର ମୂର୍ଖ ହେଲେ ସୁଦ୍ଧା ପୁରୀ ନିକଟ ୧୬ ଶାସନ ବ୍ରାହ୍ମଣ ବ୍ୟତୀତ ଅନ୍ୟ କେହି ହେଲେ ପଣ୍ଡିତ ହେଲେ ସୁଦ୍ଧା ମୁକ୍ତି ମଣ୍ଡପ ଉପରେ ବସି ପାରନ୍ତି ନାହିଁ । ଏହି ବ୍ୟବସ୍ଥା ଓ ବିଚାରର ଆଉ ପଟାନ୍ତର ନାହିଁ । ପଣ୍ଡିତମାନେ ଏହି ମୁକ୍ତିମଣ୍ଡପରେ ବସି ପୂଜା ଉପାସନା ଶୌଚାଶୌଚ ପାଳିବାର ନକ୍ଷତ୍ର ଇତ୍ୟାଦି ବିଷୟରେ ଆଲୋଚନା କରନ୍ତି । ତର୍କ ବିତର୍କ ବାଗବିତଣ୍ଡା କରନ୍ତି । କିନ୍ତୁ ଦେଶର ଉନ୍ନତି ସାଧନ ମାର୍ଗ ପୃଥକ । ବାଲ୍ୟ ବିବାହ, ଚିର ବୈଧବ୍ୟ, ଅଯଥା ଜନ୍ମଗତ ଜାତିଭେଦ, ସ୍ତ୍ରୀ ମାନଙ୍କର ମୂର୍ଖତା ଓ ଅବରୋଧପ୍ରଥା ଦୂରୀଭୂତ ନ ହେଲେ ଏବଂ ବ୍ରହ୍ମଚର୍ଯ୍ୟ ଅବଲମ୍ବନ ନ କଲେ ଦେଶ ବା ଜାତିର ଉନ୍ନତି ଅସମ୍ଭବ ।

ପୁରୀଠାରୁ ଖଲ୍ଲିକୋଟ ଫେରିଲୁ । ସେଠାରେ ମୋହର ବାଲ୍ୟସ୍ନେହୀ ସହାଧ୍ୟାୟୀ ବର୍ତ୍ତମାନ ଖଲ୍ଲିକୋଟ ସିରସ୍ତାଦାର ଶ୍ରୀଯୁକ୍ତ ବଳଭଦ୍ର ମହାପାତ୍ରଙ୍କ ଆତିଥ୍ୟ ଗ୍ରହଣ କଲୁ । ଶ୍ୱଶୁର ନରହରି ଦାସଙ୍କୁ ସଙ୍ଗେ ଦେଇ ସ୍ତ୍ରୀକି ଗ୍ରାମକୁ ପଠାଇ ଦେଇ ମୋହର ପ୍ରିୟ ଶିଷ୍ୟ ମନ୍ଦାର ଗ୍ରାମ ନିବାସୀ ଶ୍ରୀବଂଶୀ ତ୍ରିପାଠୀଙ୍କ ସଙ୍ଗେ ଧରି ସେଠାରୁ ମାନ୍ଦ୍ରାଜ ଗଲୁ । ଇନସପେକ୍ଟର ଜେନେରାଲଙ୍କ

ମୋହର ଦୁଃଖ କଷ୍ଟ ଜଣାଇ ପୁରୁଷୋତ୍ତମପୁରଠାରୁ ସ୍ଥାନାନ୍ତର ପାଇବା ଉଦ୍ଦେଶ୍ୟରେ ମୋହର ଏହି ମାନ୍ଦ୍ରାଜ ଯାତ୍ରାର ଲକ୍ଷ୍ୟ ଥିଲା । ମୋହର ଅଫିସ କାର୍ଯ୍ୟ ମୁଁ ଠିକ୍ କରୁଥିଲେହେଁ ରେଜିଷ୍ଟ୍ରାର ପୂର୍ଣ୍ଣସ୍ୱାମୀ ପାନ୍ତୁଲୁ ଅନେକ ସମୟରେ ମୋ ପ୍ରତି ବିରକ୍ତ ହେଉଥାନ୍ତି । ଯେବେ ମୁଁ ବ୍ରହ୍ମପୁରଠାରେ ସବ୍‌ଡେପୁଟି ସବ୍‌ରେଜିଷ୍ଟ୍ରାର ଥିଲାବେଳେ ଇଂରାଜୀ ଟଣ୍ଡିର ଫାର୍ମର ଓଡ଼ିଆ ଅନୁବାଦ କରି-ଦେବା ପାଇଁ ରେଜିଷ୍ଟ୍ରାର ମୋତେ ଆଦେଶ ଦେଲେ । ମୁଁ ତହିଁର ଅନୁବାଦ କରି ଦେଲି । ରେଜିଷ୍ଟ୍ରାର ମୋହର ନିଜ ଓଡ଼ିଆ ଅନୁବାଦକୁ ନେଇ ଅଫିସର ଏକ ତେଲୁଗୁ ରାମାସ୍ୱାମୀ ପାନ୍ତୁଲୁ ଦ୍ୱାରା ସଂଶୋଧନ କରାଇଲେ । ତେଲୁଗୁ ଲୋକମାନେ ଭଲ ଓଡ଼ିଆ ଜାଣନ୍ତି ନାହିଁ । ଉକ୍ତ ସଂଶୋଧିତ ଅନୁବାଦରେ ମୁଁ ଦସ୍ତଖତ କଲି ନାହିଁ । କାରଣ ରାମାସ୍ୱାମୀ ପାନ୍ତୁଲୁଙ୍କର ଅନୁବାଦ ହେଲା, ମୋହର ଅନୁବାଦ ହୋଇ ଆଉ ରହିଲା ନାହିଁ । ଆଉ ଏକ ସମୟରେ ଦେଶ ମିଶ୍ରଣ ଆନ୍ଦୋଳନରେ ମୋହର ବିଶେଷ ସମ୍ବନ୍ଧ ଅଛି ବୋଲି ରେଜିଷ୍ଟ୍ରାର ଆଶଙ୍କା କରନ୍ତି । ପୁଣି ପୁରୁଷୋତ୍ତମପୁର ସବ୍‌ରେଜିଷ୍ଟ୍ରାର ଥିଲାବେଳେ ତାହାଙ୍କୁ କେବେ ଦେଖିବାକୁ ଯାଇ ନ ଥାଏ । ତା ଛଡ଼ା ତାହାଙ୍କ ଆଦେଶ ନ ଥାଇ ନିଜ ଇଚ୍ଛାରେ ବ୍ରହ୍ମପୁର ଯାଇ ଉତ୍କଳ ସମ୍ମିଳନୀରେ ଯୋଗଦେଇଥିଲି । ଏବଂ ବିଧ ନାନା କାରଣରୁ ରେଜିଷ୍ଟ୍ରାର ମୋ ପ୍ରତି ବିରକ୍ତ ହୋଇ ମୋ ବିରୋଧରେ ଇନସପେକ୍ଟର ଜେନେରାଲଙ୍କ ନିକଟକୁ ରିପୋର୍ଟ କରିଥିଲେ । ଅତି ଭକ୍ତି ସ୍ୱୈରର ଲକ୍ଷଣ ହେଲେହେଁ କେହି କେହି ଉପରିସ୍ଥ କର୍ମଚାରୀ ନିମ୍ନ କର୍ମଚାରୀମାନଙ୍କଠାରୁ ଅତି ଭକ୍ତି ପାଇବାକୁ ଚାହାନ୍ତି । ପୂର୍ବେ ପାର୍ବତୀପୁରରେ ସବ୍‌ରେଜିଷ୍ଟ୍ରାର ଥିଲାବେଳେ ସେଠା ସବ କଲେକ୍ଟରର ଡେଭିସ ସାହେବଙ୍କୁ ମୁଁ କାହିଁକି ଯାଇ ଦର୍ଶନ କରି ନାହିଁ ବୋଲି ସେ ମତେ ପ୍ରଶ୍ନ କରିଥିଲେ । ସେତେବେଳେ କହିଥିଲି ଯେ ମୁଁ କାର୍ଯ୍ୟରେ ବ୍ୟସ୍ତ ଥିଲି ଓ କାର୍ଯ୍ୟ ତ୍ୟାଗକରି ଯାଇ ସାହେବଙ୍କୁ ଦର୍ଶନ କରିବା ଆବଶ୍ୟକ ବୋଲି ମନେ କରି ନ ଥିଲି । ଅତଏବ ଦର୍ଶନ କରି ଯାଇ ପାରି ନାହିଁ । ମୋହର ଏହି କଥା ଶ୍ରୀଶ୍ରୀ ସାହେବ ମହାଶୟ ରାଗାନ୍ୱିତ ହୋଇ ପଡ଼ିଥିଲେ ।

ମାନ୍ଦ୍ରାଜରେ ୫ ଦିନ ମାତ୍ର ରହିବାକୁ ପଡ଼ିଥିଲା । ସେ ସମୟରେ

ସେଠାରେ ବାବୁ ସୋମ ସୁନ୍ଦର ମହାନ୍ତି ବି. ଏ. ବି. ଏଲ. ବ୍ୟତୀତ ଅନ୍ୟ କେହି ମୋହର ପରିଚିତ ସ୍ନେହୀ ନ ଥିଲେ । ସୋମ ବାବୁ ମଧ୍ୟ ଆପଣା କାର୍ଯ୍ୟରେ ବ୍ୟଗ୍ର ଥିଲେ । ବେଶୀ ସମୟ ତାହାଙ୍କ ସଙ୍ଗ ଲାଭ କରି ପାରି ନ ଥିଲି । କୌଣସି ଦୋକାନକୁ ଗଲେ ମୁଁ କୌଣସି ନା କୌଣସି ଜିନିଷ କିଣିବାକୁ ଇଚ୍ଛା କରୁଥିଲି । ସଦ୍ୟ ଅନାବଶ୍ୟକ ଥିଲେହେଁ ନାନା ପ୍ରକାର ଚିଜ କିଣି ପକାଇଥାଏ । ଏଣୁ କରି ଅନେକ ସମୟରେ ମୁଁ ନିଜେ ଦୋକାନକୁ ନ ଯାଇ ଅନ୍ୟଦ୍ୱାରା ଆବଶ୍ୟକୀୟ ଜିନିଷ ମଗାଇ ଥାଏ । ମାନ୍ଦ୍ରାଜ ଖୁବ ବଡ଼ ସହର । ନାନାବିଧ ପଦାର୍ଥ ଏଠାରେ ମିଳେ । ଏଠାରେ ଏଣୁ କେଣୁ ପ୍ରାୟ ୫୧୦୦୲ର ପଦାର୍ଥ କିଣି ପକାଇଥିଲି । ଦେଶାଟନରୁ ଆଉ କଣ ଲାଭ ହୁଏ ? ଦକ୍ଷିଣ ଦେଶରେ ସ୍ତ୍ରୀମାନଙ୍କର ଅବରୋଧ ପ୍ରଥା ନାହିଁ । ସ୍ତ୍ରୀ ପୁରୁଷ ପ୍ରକାଶ୍ୟ ଭାବରେ ରାଜ ମାର୍ଗରେ-ଗମନା ଗମନ କରନ୍ତି । ଏପରି କରିବା ଦ୍ୱାରା ସେମାନଙ୍କର ଶିକ୍ଷା ସଭ୍ୟତା ଓ ସମାଜିକତା ବୃଦ୍ଧି ଲାଭ କରେ ।

•

ମାନ୍ଦ୍ରାଜରୁ ଫେରି ନିଜ ଗ୍ରାମ ମନ୍ଦାରଠାରେ ଅବଶିଷ୍ଟ ଛୁଟି ସମୟତକ ଅତିବାହିତ କଲି । ଛୁଟି ଶେଷରେ ପୁନର୍ମୂଷିକୋଭବ ! ଫେର୍ ପୁରୁଷୋତ୍ତମପୁର ଆସି କାର୍ଯ୍ୟରେ ନିଯୁକ୍ତ ହେଲି । ସେତେବେଳେ ସେଠାରେ ଶ୍ରୀମାନ୍ ଶିବରାମ ରଥ ସ୍କୁଲ ସମୂହର ସବ୍‌ଆସିଷ୍ଟାଣ୍ଟ ଇନସ୍‌ପେକ୍‌ଟର ଥିଲେ । ଏହାଙ୍କ ପିତା ଶ୍ରୀଯୁକ୍ତ ପଣ୍ଡିତ ଭଗବାନ ରଥେ ସମୟେ ସମୟେ ଏଠାରେ ରହନ୍ତି । ଏହାଙ୍କ ସହିତ ବିବିଧ ବିଦ୍ୟା ଚର୍ଚ୍ଚା ଓ ସଦାଳାପରେ ଦିନ କଟିଯାଏ । ଏପରି ଜଣେ ବିଚକ୍ଷଣ, ବୁଦ୍ଧିମାନ୍, ସାଧୁ ସଚ୍ଚରିତ୍ର ପଣ୍ଡିତ ମିଳିବା ଦୁଷ୍କର । ମୁଁ ମୋର ଛାତ୍ରାବସ୍ଥାଠାରୁ, ପଣ୍ଡିତ ମହାଶୟ ବ୍ରହ୍ମପୁର ଟ୍ରେନିଂ ନର୍ମାଲ ସ୍କୁଲ ଶିକ୍ଷକରୂପେ ରଙ୍ଗପୁର ଠାରେ ନିବାସ କରୁଥିବା ଦିନାବଧି ଏହାଙ୍କର ଶିଷ୍ୟତ୍ୱ ଲାଭ କରି ବହୁ ଧର୍ମଜ୍ଞାନ ଓ ସଦାଚାର ଲାଭ କରି ଅଛି । ପଣ୍ଡିତ ମହାଶୟ ମଧ୍ୟ ମତେ ଏ ପର୍ଯ୍ୟନ୍ତ ଆପଣାର ପଟ୍ଟଶିଷ୍ୟ ଜ୍ଞାନ କରିଛନ୍ତି । ମୁଁ ଯେଉଁ ସ୍ଥାନରେ ଥିଲେ ମଧ୍ୟ ସେଠାରେ କେତେ ଗୁଡ଼ିଏ ଶିଷ୍ୟ ସଂଗ୍ରହ କରି ସେମାନଙ୍କୁ ଯାହାକିଛି ବିଦ୍ୟା-ଶିକ୍ଷା ଦେବାରେ ପ୍ରବୃତ୍ତ ହୁଏ ।

ପୁରୁଷୋତ୍ତମପୁରରେ ମୋ ବସା ଗୃହରେ ସକାଳ ବେଳେ ଏବଂ ସନ୍ଧ୍ୟାବେଳେ କେତେଗୁଡ଼ିଏ ପିଲାଙ୍କୁ ସଂଗ୍ରହ କରି ସେମାନଙ୍କୁ ଇଂରାଜୀ ଭାଷା ଶିକ୍ଷା ଦେଉଥାଏ । କପିଳ, ସତ୍ୟବାଦୀ, ମାର୍କଣ୍ଡ, ଲକ୍ଷ୍ମୀନାରାୟଣ, କୃଷ୍ଣମୂର୍ତ୍ତି ପ୍ରଭୃତି କେତେ ଜଣ ଛାତ୍ର ମୋ ପାଖେ ରହି ମୋଠାରୁ ପ୍ରଥମେ ଇଂରାଜୀ ଶିକ୍ଷା ଆରମ୍ଭ କରିଥିଲେ । କପିଳ ପାଢ଼ୀ, ସତ୍ୟବାଦୀ ଦାସ ଗ୍ରାମ୍ୟ ସ୍କୁଲମାନଙ୍କରେ ବର୍ତ୍ତମାନ ଶିକ୍ଷକତା କରୁଛନ୍ତି । ମାର୍କଣ୍ଡ ସାହୁ ବ୍ରହ୍ମପୁର କଲେଜରେ ପଢ଼ି ଏଫ୍. ଏ. କ୍ଲାସ ପର୍ଯ୍ୟନ୍ତ ଉଠି ଯାଇଥିଲା । କୃଷ୍ଣ ମୂର୍ତ୍ତି ସବ୍‌ରେଜିଷ୍ଟ୍ରାର ଅଫିସରେ ଗୁମାସ୍ତା ହୋଇ ପାରିଥିଲା । ଏତେବେଳେ ସବୁତ୍ର ସ୍କୁଲ ସ୍ଥାପନ କରି ଗ୍ରାମ-ମାନଙ୍କୁ ଇଂରାଜୀ ଶିକ୍ଷା ଦେବା ମୋହର ବଳବତୀ ଇଚ୍ଛା ଥାଏ । କିନ୍ତୁ ମୁଁ ରେଜିଷ୍ଟ୍ରି ବିଭାଗରେ ରହିଥିବା ଯୋଗୁ ମୋହର ଏହି ଇଚ୍ଛା ଫଳବତୀ ହୋଇ ପାରେ ନାହିଁ । ତଥାପି ଯଥା ସାଧ୍ୟ ଚେଷ୍ଟା ସେ ଦିଗରେ କରିଥାଏ ।

ଗୋବରା ନିବାସୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ଦୁର୍ଗା ମାଧବ ପଟ୍ଟନାୟକଙ୍କ ସାହାଯ୍ୟ ସହାନୁଭୂତି ପାଇ ଆମ୍ଭେମାନେ ଗୋବରାଠାରେ ଏକ ଗୃହ ନିର୍ମାଣ କରି ଏଥିରେ ସ୍କୁଲ ସ୍ଥାପନ କରିଥିଲୁ । ଏହି ଗୃହନିର୍ମାଣରେ ମୋହର ଟ ୩୦୦୲ ପର୍ଯ୍ୟନ୍ତ ବ୍ୟୟ ହୋଇଥିଲା । କଟକ ଜିଲାର କ୍ଷେତ୍ରବାସୀ ପ୍ରଧାନ ନାମକ ଜଣେ ଶିକ୍ଷକ ନିଯୁକ୍ତ ହେଲେ । ଏହାଙ୍କୁ ମାସିକ ଟ ୧୫୲ ହିସାବରେ ବେତନ ଦିଆଯାଏ । ଏହି ସ୍କୁଲରେ ଛାତ୍ରବର୍ଗମାନଙ୍କୁ ଇଂରାଜୀ ଶିକ୍ଷା ଦିଆଯାଉ ଥିଲା । ବାସୁଦେବପୁର ଶାସନୀ ବ୍ରାହ୍ମଣମାନଙ୍କର ପ୍ରଥମେ ଯଥେଷ୍ଟ ଉଦ୍ୟମ ଉତ୍ସାହ ଦେଖାଗଲା । କିନ୍ତୁ ଏହି ଉଦ୍ୟମ ବହୁ କାଳ ସ୍ଥାୟୀ ହୋଇପାରିଲା ନାହିଁ । ଶାସନୀ ବ୍ରାହ୍ମଣମାନେ ପ୍ରେତପଣା, ବ୍ରାହ୍ମଣ ଭୋଜନ ପ୍ରଭୃତି ଯେପରି ଦୂର ସ୍ଥାନକୁ ଦଉଡ଼ି ଯାଆନ୍ତି, ବିଦ୍ୟା ଶିକ୍ଷା ସକାଶେ ସେପରି ସ୍କୁଲକୁ ଆସନ୍ତି ନାହିଁ । ଶିକ୍ଷକଙ୍କୁ ପ୍ରାୟ ଦେଢ଼ ବର୍ଷ ପର୍ଯ୍ୟନ୍ତ ମାସିକ ଟ ୧୦ । ଟ ୧୫ ଲେଖାଏଁ ମୁଁ ଦେଉଥାଏ ।

ଏହି ଛୁଟିପରେ ମୋହର ଦିଗପୁରି (ଦିଗପହଣ୍ଡି) ସ୍ଥାନାନ୍ତର ହେଲା । ୧୯୦୯ ଜୁଲାଇ ଆରମ୍ଭରୁ ଦିଗପହଣ୍ଡି ଗଡ଼ (ଦିଗପୁରି ଷ୍ଟେସନ) ଠାରେ

କାର୍ଯ୍ୟରେ ପ୍ରବେଶ କରିବାକୁ ହେଲା । ବଡ଼ଖେମୁଣ୍ଡି ରାଜାଙ୍କର ରାଜଧାନୀ । ସେହି ବର୍ଷ ସେହି ସ୍ଥାନରେ ସବରେଜେଷ୍ଟ୍ରି ଅଫିସ ନୂତନ ସ୍ଥାପିତ ହୋଇଥାଏ । ସେଠାରେ ଅନ୍ୟାନ୍ୟ କୌଣସି ଗଭର୍ଣ୍ଣମେଣ୍ଟ ଅଫିସ ନଥିଲା । ଇଂରାଜୀ ଶିକ୍ଷିତ ଗଭର୍ଣ୍ଣମେଣ୍ଟ କର୍ମଚାରୀ କେହି ହେଲେ ସଙ୍ଗୀ ହେବାକୁ ନଥିଲେ । ସେଠାରେ ରାଜାଙ୍କର ଗଜପତି ଯନ୍ତ୍ରାଳୟରୁ 'ଗୁଣ ଦର୍ପଣ' ନାମକ ଏକ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶିତ ହୁଏ । ଗୁଣ ଦର୍ପଣ ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ଓ ଲେଖକ ଗୌରୀକବି ରାଜସଭା ପଣ୍ଡିତ ମଧୁସୂଦନ ତର୍କ ବାଚସ୍ପତି, ଚନ୍ଦ୍ରଶେଖର ସାହିତ୍ୟ ରତ୍ନାକର ନୂତନ କବି ଓ ଲେଖକ ଯୁବକ ବନମାଳୀ କବିଚନ୍ଦ୍ର, ବୈଷ୍ଣବ ରାଜଗୁରୁ ଇତ୍ୟାଦି ରାଜ ପରିଷଦମାନେ ମୋହର ସଙ୍ଗୀ ହେଲେ ।

ସ୍ଥାନର ଭଲମନ୍ଦ କେବଳ ଅଧିବାସୀର ଅଭ୍ୟାସ ଉପରେ ନିର୍ଭର କରେ । ଯେ କୌଣସି ସ୍ଥାନ ହେଉ ଅଭ୍ୟାସ ଯୋଗୁଁ ସୁଖପ୍ରଦ ହୁଏ । ପୁଣି ସେହି ଅଭ୍ୟାସ ହେତୁ ଦୁଃଖଦାୟକ ହୁଏ । ଅଭାବ ହୁଏ ସକଳ ଉଦ୍ଭାବନର କାରଣ । ସର୍ବଦା ଅବସ୍ଥାନୁରୂପ ବ୍ୟବସ୍ଥା କରିବାକୁ ହୁଏ । ନ୍ୟାୟ ନିଷ୍ଠାପର ଭାବରେ ଓ ରୀତିମତ କାର୍ଯ୍ୟ କଲେ ଅଧିକାରୀମାନେ ଏବଂ ବଡ଼ ଲୋକମାନେ ମଧ୍ୟ ବିଚଳିତ ହୋଇପଡ଼ନ୍ତି । ଏଥିର ଟିକେଟିକେ ଦୃଷ୍ଟାନ୍ତ ମନେ ପଡ଼ୁଥିଛି । ସବ୍‌ରେଜେଷ୍ଟ୍ରି କଚେରୀମାନଙ୍କରେ ଯେଉଁ ଭାଷାରେ ବହୁ ସଂଖ୍ୟକ ଦଲିଲ ଲିଖିତ ହୁଏ ସେହି ଭାଷାରେ ସେ ସବୁ ରେଜେଷ୍ଟ୍ରି ଅଫିସର ଇଣ୍ଡେକ୍ସ ବା ସୂଚିପତ୍ର ରଖାଯାଏ । ଗଞ୍ଜାମରେ ସବ୍‌ରେଜିଷ୍ଟ୍ରାର ମାନେ ତେଲୁଗୁ ଲୋକ ଥିବା ଯୋଗୁଁ ସର୍ବତ୍ର ଏହି ନିୟମର ବ୍ୟତିକ୍ରମ ଘଟୁଥାଏ । ମୁଁ ରସୁଲକୁଣ୍ଡାରେ କିଛିକାଳ ନିମନ୍ତେ ଅସ୍ଥାୟୀ ସବ୍‌ରେଜିଷ୍ଟ୍ରାର ଥିଲାବେଳେ ସେଠା ସବ୍-ରେଜେଷ୍ଟ୍ରି ଅଫିସର ଇଣ୍ଡେକ୍ସପତ୍ରଗୁଡ଼ିକ ଓଡ଼ିଆ ଭାଷାରେ ରଖିଥିଲି । ଏଥି-ପାଇଁ ଜିଲା ରେଜିଷ୍ଟ୍ରାରଙ୍କର ବିରକ୍ତି ଭାଜନ ହୋଇଥିଲି । ସ୍ୱର୍ଗୀୟ ସ୍ୱଦେଶ ବତ୍ସଳ ନରସିଂହ ଦାସ ମଧ୍ୟ ପୁରୁଷୋତ୍ତମପୁର ଅଫିସ ଇଣ୍ଡେକ୍ସ ଓଡ଼ିଆ କରି ଦେଇଥିଲେ ବୋଲି ରେଜିଷ୍ଟ୍ରାରଙ୍କ ସହିତ ତାଙ୍କର ମତାନ୍ତର ହୋଇ ଦେ

ମନାନ୍ତର ଘଟିଥିଲା । ଇଣ୍ଡେକ୍ସର ଭାଷା ବଦଳାଇବାକୁ ହେଲେ ବର୍ଷ ପ୍ରାରମ୍ଭରେ କେବଳ ବଦଳାଇବାକୁ ହୁଏ । ମୁଁ ବ୍ରହ୍ମପୁରଠାରେ ଅସ୍ଥାୟୀ ସବରେଜିଷ୍ଟ୍ରାର ଥିଲାବେଳେ କାଳେ ଇଣ୍ଡେକ୍ସ ଭାଷା ଓଡ଼ିଆ କରିଦେବ ବୋଲି ଶଙ୍କା କରି ଜାନୁୟାରି ପହିଲା ତାରିଖ ପୂର୍ବରୁ ମତେ ଅନ୍ୟ ସ୍ଥାନକୁ ବଦଳାଇ ଦେଇଥିଲେ ।

କିଛିଦିନ ପରେ ଫେର ଏକ ମାସ ପୀଡ଼ିତ ଛୁଟି ପାଇ ଗ୍ରାମକୁ ଗଲି । ଏହି ସମୟରେ ବେଲଗୁଣ୍ଠା ଗ୍ରାମରେ ଏକଜୀବନ ବୀମାକମ୍ପାନି ଥିଲା । ଭଗୀରଥି ଦାସ, ଧର୍ମ ମହାପାତ୍ର, କପିତାନ ବେହେରା, ଆନନ୍ଦ ସାହୁ, ନରସିଂହ ପଣ୍ଡା ଇତ୍ୟାଦି ଅନେକ ଲୋକଙ୍କର ଏହି କମ୍ପାନିରେ ଅଂଶ ଥିଲା । ବେଲଗୁଣ୍ଠାଠାରେ କୌଣସି ବାଳିକା ବିଦ୍ୟାଳୟ ନ ଥିବା ଦେଖି ସେଠାରେ ମୁଁ ଏକ ବାଳିକା ବିଦ୍ୟାଳୟ ସ୍ଥାପନ କଲି । ମନ୍ଦାର ଶ୍ରୀବତ୍ସ ତ୍ରିପାଠୀଙ୍କୁ ଉକ୍ତ ବାଳିକା ସ୍କୁଲର ଶିକ୍ଷକ ନିଯୁକ୍ତ କରାଗଲା । କମ୍ପାନି ଦିଅନ୍ତି ମାସିକ ଟ ୫୲, ମୁଁ ଦିଏ ଟ ୫୲, ଏବଂ ଅନ୍ୟ ସାଧାରଣ ଲୋକମାନେ କିଛି ଆଦାୟ ହୁଏ । ଏହି-ପରି ସଂଗୃହୀତ ଧନରୁ ସ୍କୁଲ ଘର ଭଡ଼ା, ଶିକ୍ଷକ ବେତନ ଓ ଅନ୍ୟାନ୍ୟ ଖର୍ଚ୍ଚ ଚଳିଯାଏ । ପିତାମାତାମାନଙ୍କୁ ବହୁତ ଖୋସାମଦ, ତୋଷାମଦ କରି ବାଳିକାମାନଙ୍କୁ ପୋଷାକ ମିଠାଇ ଖେଳ ଜିନିଷ ଇତ୍ୟାଦି ପାରିତୋଷିକ ଦେଇ ସ୍କୁଲ ସକାଶେ ଛାତ୍ରୀ ସଂଗ୍ରହ କରିବାକୁ ପଡ଼େ । ଏହି ଅନୁଷ୍ଠାନରେ ମୋହର ପ୍ରାୟ ଟ ୵୦୦୲ ଖର୍ଚ୍ଚ ହୋଇଥିଲା । ବେଲଗୁଣ୍ଠା ନିବାସୀ ବ୍ରଜବନ୍ଧୁ ତ୍ରିପାଠୀ ଏହି ସ୍କୁଲରେ କିଛି କାଳ ଶିକ୍ଷକତା କରି କିଛି ଗ୍ରାଣ୍ଟପାଇ ରହି-ଥିଲେ । ବର୍ତ୍ତମାନ ସେ ପୁରୀରେ ସଂସ୍କୃତ ଶିକ୍ଷା କରି ଆଜି ଏଠାରେ ପଣ୍ଡିତ ଓ କବିରାଜ ନାମରେ ସୁବିଖ୍ୟାତ ହୋଇଛନ୍ତି । ଆନନ୍ଦର ବିଷୟ, ଆଜି ସେହି ବାଳିକା ବିଦ୍ୟାଳୟଟି ଗଭର୍ଣ୍ମେଣ୍ଟ ଗାର୍ଲ ସ୍କୁଲରେ ପରିଣତ ହୋଇଅଛି । ବେଲଗୁଣ୍ଠାରେ ଜୀବନବୀମା କମ୍ପାନି ଗୋଟିଏ ମୋଟା କଲ ଅଣାଇ ନାନାବିଧ ବ୍ୟବସାୟ କରି ବହୁ ଲୋକଙ୍କର ଜୀବିକା ନିର୍ବାହ ସଙ୍ଗେ ସଙ୍ଗେ କମ୍ପାନି ଭଣ୍ଡାରରେ ବହୁ ଧନ ସଂଗ୍ରହ କରିପାରିଥିଲେ । ଏହି କମ୍ପାନି କର୍ମଚାରୀମାନେ ଆପଣା ମଧ୍ୟରେ ଅଂଶ ସଂଗ୍ରହ କରି ପାରିଥିଲେ ।

କମ୍ପାନି କର୍ମଚାରୀମାନେ ଆପଣା ମଧ୍ୟରେ ଅଂଶ ସଂଗ୍ରହ କରି ଏକ ଗ୍ରୁପ୍ କଲ ରଖି ତାଙ୍କର "ଉତ୍କଳ ଜୀବନ" ନାମକ ଏକ ମାସିକ ପତ୍ର ପ୍ରକାଶ କରୁଥିଲେ । ଏହି ସମୟରେ ମୁଁ ମଧ୍ୟ ୧୦ । ୧୫ ହଜାର ଟଙ୍କାର ମୂଳଧନ ଅଂଶ ସ୍ୱରୂପ ସଂଗ୍ରହ କରି ବେଲଗୁଣ୍ଠା ବା ରସୁଲକୁଣ୍ଡାଠାରେ ଏକ ବାଣିଜ୍ୟ ସଂଘ ସ୍ଥାପନ କରିବା ଇଚ୍ଛା କରୁଥିଲି । କିନ୍ତୁ କାଳର କୁଟିଳ ଗତି । ଅତିଶଯ୍ୟ ଲୋଭରେ ସର୍ବନାଶ ହୁଏ, ପୂର୍ବପ୍ରବୃତ୍ତି ସ୍ପୃହା ନଷ୍ଟ ହୁଏ । ଏହି କମ୍ପାନିର କ୍ଷ ଓ କର୍ମଚାରୀମାନେ ଲଭ୍ୟାଂଶ ବାହାରେ ଲୋକଙ୍କର ଧନ ଆତ୍ମସାତ୍ କଲେ ଭାବ ପତ୍ରରେ ସ୍ୱେଚ୍ଛା ଲୁଟ୍ କଲେ । କମ୍ପାନି ଦିବାଳି ହୋଇଗଲା । କମ୍ପାନି ପତ୍ର ଏବେ ସମସ୍ତେ ଖଣ୍ଡ ଗ୍ରହନ୍ତି । କମ୍ପାନିର ନାମ ଚତୁର୍ଦ୍ଦିଗରେ ବଦନାମ ହେଲା । କମ୍ପାନି ବା ସଭାଉତ୍ତର ଲୋକଙ୍କର ଆଉ ବିଶ୍ୱାସ ରହିଲା ନାହିଁ । ବିଶ୍ୱାସ ଅଟେ ସକଳ ବ୍ୟବସାୟର ମୂଳ । ବିଶ୍ୱାସ ହରାଇଲେ ଆଉ କୌଣସି ବ୍ୟବସାୟ ଚଳି ପାରେ ନାହିଁ ।



ଆଉ ଏକ ଘଟଣା—ମୁଁ ବହ୍ମପୁର ସବ୍‌ରେଜିଷ୍ଟ୍ରାର ଥିଲାବେଳେ ବଡ଼ ଖେମୁଣ୍ଡି ରାଜା ଶ୍ରୀ କୃପାମୟ ଦେବ ଗଜପତି ମହାରାଜା ତାହାଙ୍କର କୌଣସି ଏକ ବଙ୍ଗଳା ବନ୍ଦୀ କରିଦେବା ନିମନ୍ତେ ରେଜେଷ୍ଟ୍ରି ଅଫିସକୁ ଆସିଥିଲେ । ଦସ୍ତାବିଜକାରୀ ଯଦି ରେଜେଷ୍ଟ୍ରି ହାକିମଙ୍କର ଅପରିଚିତ ଥାନ୍ତି ତେବେ ତାହାଙ୍କର ଟିପ ଚିହ୍ନ ରଖିବା ନିୟମ । ଉକ୍ତ ନିୟମାନୁସାରେ ଟିପ ଚିହ୍ନ ଦେବା ପାଇଁ ମୁଁ ରାଜା ସାହେବଙ୍କୁ ଅନୁରୋଧ କଲି । ରାଜା ହୋଇ ଟିପ ଚିହ୍ନ ଦେବା ତାହାଙ୍କୁ ଅପମାନ ବୋଧ ହେଲା । ସେ ରାଜା ହୋଇଥିଲେ ମଧ୍ୟ ମୋହର ବ୍ୟକ୍ତିଗତ ପରିଚିତ ନ ଥିବା ଯୋଗୁଁ ତାହାଙ୍କୁ ଟିପଚିହ୍ନ ଦେବାକୁ ପଡ଼ିବ ବୋଲି କହିବାରୁ ରାଜା ମହୋଦୟ ମୋ ଉପରେ ଅତ୍ୟନ୍ତ ରାଗାନ୍ୱିତ ହୋଇ ଉଠିଲେ । କିନ୍ତୁ ଅଗତ୍ୟା ବାଧ୍ୟ ହୋଇ ଟିପ ଚିହ୍ନ ଦେଇଗଲେ । ଏହି ଘଟଣାରୁ ମୋ ଉପରେ କ୍ରୋଧାନ୍ୱିତ ହୋଇ ମୂର୍ଖ ମନ୍ତ୍ରୀମାନଙ୍କ କୁମନ୍ତ୍ରଣାରେ ପଡ଼ି ନାନାବିଧ ମିଥ୍ୟା କଥା ଲେଖି ମୋ ବିରୁଦ୍ଧରେ ରେଜେଷ୍ଟ୍ରି ବିଭାଗୀୟ ଇନସ୍‌ପେକ୍‌ଟର ଜେନେରାଲ ସାହେବଙ୍କ ନିକଟକୁ ଦରଖାସ୍ତ ଦେଲେ ।

ଫାଇନାନସ୍ ସେକ୍ରେଟରର ଜେନେରାଲ ମୋହର କୈଫିୟତ ନେଇ ଏହି ମନ୍ତବ୍ୟ କଲେ ଯେ—"ସବ୍‌ରେଜିଷ୍ଟ୍ରାରଙ୍କ ନିୟମ ପାଳନ ସଙ୍ଗେ ସଙ୍ଗେ କିଛି କୌଶଳ ଅବଲମ୍ବନ କରିବା କଥା ଥିଲା । ଏହି ଘଟଣାରୁ ଏଣିକି ଚେତନା ଲାଭ କରିବେ ।" ସେହି ଦନାନଧି ରାଜା ସାହେବ ମୋ ପ୍ରତି ସର୍ବଦା କ୍ରୋଧାନ୍ୱିତ ଏବଂ ଖଡ୍‌ଗହସ୍ତ ଥିଲେ ବୋଲି ମୁଁ ଶୁଣିଥିଲି । କିନ୍ତୁ ତାଙ୍କ ସହ ଆଜି ସାକ୍ଷାତ ଘଟି ନ ଥିଲା । ସେତେବେଳେ ରାଜା ଓ ରେଜିଷ୍ଟ୍ରାର ବୋଲି ବ୍ରଜବନ୍ଧୁ ଖବର କାଗଜରେ ଏହି କଥାଟା ରାଷ୍ଟ୍ର ହୋଇ ପଡ଼ିଥିଲା ଓ ଏହା ଅନେକ ଲୋକ ଜାଣିପାରି ଥିଲେ । ଏବେ ମୋହର ବଡ଼ଖେମୁଣ୍ଡି ସ୍ଥାନାନ୍ତର ଦେଖି କେହି କେହି ବନ୍ଧୁ ମୋତେ କହୁଥାନ୍ତି ଯେ ସେଠା ରାଜାତ ତୁମର ବିରୋଧୀ ତୁମେ ତାହାଙ୍କର ରାଜଧାନୀରେ ରହି କିପରି କାମ କରି ପାରିବ । କିନ୍ତୁ ମୁଁ ବଡ଼ଖେମୁଣ୍ଡି ଯାଇ ଦେଖିଲି ଯେ ରାଜାଙ୍କର ମୋ ପ୍ରତି ଥିବା ମନାନ୍ତର କେଉଁଦିନୁ ଅପସାରିତ ହୋଇ ସାରିଲାଣି । ଏଥି ପୂର୍ବର ମନୋମାଳିନ୍ୟ ଯାଇ ମନୋ ମିଳନ ଆସି ପହଞ୍ଚିଲାଣି । ରାଜା ମହୋଦୟ ଅତ୍ୟନ୍ତ କ୍ଷମାଶୀଳ । କୌଣସି ରାଗ ଚିର କାଳ ମନରେ ରଖି ନଥାନ୍ତି । ରାଜାଙ୍କ ଅନେକ ଶୁଭାଶୁଭ ଅନୁଷ୍ଠାନରେ ମୁଁ ଯୋଗ ଦେଉଥାଏ । ତୁଚ୍ଛି ଅନେକ ଗୁଡ଼ିଏ ସାଧାରଣ ହିତକର କାର୍ଯ୍ୟଭାର ଗ୍ରହଣ କରିଥାଏ । ସମ୍ରାଟ ସପ୍ତମ ଏଡ଼ୱାର୍ଡ଼ଙ୍କ ରାଜତ୍ୱର ସ୍ମାରକ ସ୍ୱରୂପ "ଏଡୱାର୍ଡ ମିଳନ ମନ୍ଦିର" ନାମକ ଏକ ଗୃହ ନିର୍ମାଣ ସକାଶେ ଚାନ୍ଦା ସଂଗ୍ରହ ଓ ଗୃହ ନିର୍ମାଣ ଭାର ମୋ ପ୍ରତି ଅର୍ପିତ ହେଲା । ମତେ ଅନେକ ବାଧାବିଘ୍ନ ଅତିକ୍ରମ କରି ସେହି ଗୃହ ନିର୍ମାଣ କରାଇବାକୁ ପଡ଼ିଥିଲା । ଜିଲା କଲେକ୍ଟର ପାରବ୍ରୁକ୍ ସାହେବ ଏହି ଟାଉନ ହଲ୍ ବା ମିଳନ ମନ୍ଦିରର ଦ୍ୱାରୋଦଘାଟନ ପ୍ରତିଷ୍ଠା କରିଥିଲେ । ଗ୍ରାମ ସଂସ୍କାର, ବିଦ୍ୟାଳୟ ସ୍ଥାପନ, ଗ୍ରାମହୋନ୍ନତ ସାଧନ, ଧର୍ମଶାଳା, ପାନ୍ଥଶାଳା ଓ ରାଜପଥ ନିର୍ମାଣ ଇତ୍ୟାଦି ବିଷୟରେ ମୁଁ ରାଜାଙ୍କ ନିକଟରେ ଅନେକ ସମୟରେ ଅନେକ ପ୍ରସ୍ତାବ ଦେଉଥାଏ । ତହିଁରୁ କେତେଟା ମୋ ସମୟରେ କାର୍ଯ୍ୟରେ ପରିଣତ ହୋଇ ଥିଲା । ରାଜନଗର ପାଚୀରଠାରୁ ଏଡ୍‌ୱାର୍ଡ଼ ଟାଉନ୍ ହଲ୍ ପର୍ଯ୍ୟନ୍ତ ପ୍ରାୟ ଦୁଇ ଫର୍ଲଙ୍ଗ୍ ପକ୍‌କା ସଡ଼କ ରାସ୍ତା ନିର୍ମିତ ହୋଇ ଏହି ସଡ଼କ ଖଣ୍ଡିକ ମେନ୍ସ ରୋଡ଼ ନାମରେ ଅଭିହିତ ହୋଇଥିଲା । ବାକନା ... ଅତି କ୍ଷୁଦ୍ର ଏବଂ ସଙ୍କୀର୍ଣ୍ଣ

ଥିଲା । ଏହାକୁ ବିସ୍ତୃତ ଓ ପ୍ରଶସ୍ତ କରି ଦିଆଗଲା । ଉପଯୁକ୍ତ ଶିକ୍ଷକ ନିଯୋଗ ଓ ଗ୍ରନ୍ଥାଗାର କାର୍ଯ୍ୟର ବ୍ୟବସ୍ଥା କରି ଦିଆଗଲା । ଛାତ୍ର ବୃତ୍ତି ଫଣ୍ଡ ସ୍ଥାପନ କରାଗଲା । ଜର୍ଜ ସେକେଣ୍ଡାରୀ ସ୍କୁଲ ଗୃହ ନିର୍ମାଣର ସୂତ୍ରପାତ ହେଲା ।

ଦେଶୋନ୍ନତ ବାର୍ଷିକ ଗ୍ରନ୍ଥ ସମ୍ମିଳନୀ, ଗ୍ରାମ ସଂସ୍କାର ନିମିତ୍ତ ଇତ୍ୟାଦି ବିବିଧ କାର୍ଯ୍ୟ ଅନୁଷ୍ଠିତ ହେଲା । ସେକେଣ୍ଡାରୀ ସ୍କୁଲ ପରିଚାଳନା ଭାର ମୋ ପ୍ରତି ଅର୍ପିତ ହେଲା ଏବଂ ସମ୍ପାଦକ ନୀଳମଣି ବାବୁଙ୍କ ସ୍ଥାନରେ ମୋତେ ଛାତ୍ର ବୃତ୍ତି ଫଣ୍ଡର ସମ୍ପାଦକ ହେବାକୁ ପଡ଼ିଲା । ଏହିପରି ଏହି ରାଜଧାନୀରେ ଅନେକ ପ୍ରକାର ସର୍ବସାଧାରଣ ଉପଯୋଗୀ ଲୋକହିତକର କାର୍ଯ୍ୟରେ ମୋତେ ସର୍ବଦା ବ୍ୟାପୃତ ରହିବାକୁ ହେଉଥିଲା । ଅନେକ ବାଧାବିଘ୍ନ, ଯାତନା, ଲାଞ୍ଛନା ସହ୍ୟ କରି ରାଜପରିବାରଙ୍କୁ ମନାଇ ମଣାଇ ବୁଝାଇ ସୁଝାଇ, ପ୍ରବର୍ତ୍ତାଇ କିଛି କିଛି କାର୍ଯ୍ୟ ସାଧନ କରି ନେବାକୁ ପଡ଼ୁଥିଲା । ରାଜଧାନୀ ମାନଙ୍କରେ ମନ୍ତ୍ରୀ ପରିଷଦ ପ୍ରଭୃତି ଗୌଡ଼ ଭଣ୍ଡାରୀ ଆଦି ପ୍ରିୟପାତ୍ର ପରିଷଦଠାରୁ ପାଣିଲିଆ ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀ ଲୋକଙ୍କର କୁମନ୍ତ୍ରଣା ଓ ଷଡ଼ଯନ୍ତ୍ର ସବୁ ଅତିକ୍ରମ କରି କାମରେ ପ୍ରବେଶ କରିବାକୁ ହୁଏ । ଦିନେ ରାଜା ମହୋଦୟ ମତେ ସ୍ୱର୍ଣ୍ଣ ଶୃଙ୍ଖଳ ଓ ପଦକ ଦେବାକୁ ଇଚ୍ଛା କଲେ । ମୁଁ ନାହିଁ କଲାରୁ ମୋ ପ୍ରତି କ୍ରୋଧାନ୍ୱିତ ହେଲେ । ସରକାରୀ କର୍ମଚାରୀମାନେ ଏପରି କୌଣସି ପୁରସ୍କାର ଗ୍ରହଣ କରିପାରନ୍ତି ନାହିଁ, ବୋଲି ତାହାଙ୍କୁ ଅନେକ ପ୍ରକାର ପ୍ରବୋଧିବାକୁ ହେଲା । ଏହି ପୁରସ୍କାରର କାରଣ ଜିଜ୍ଞାସା କରିବାରୁ ରାଜା କହିଥିଲେ ଯେ ବିଧବାର ପୁନର୍ବାର ନିୟୋଗ ପ୍ରୟାସୀ ଥିବା ଯୋଗୁଁ ମୋତେ ସେ ଉକ୍ତ ପୁରସ୍କାର ଦେଇଥିଲେ । କିନ୍ତୁ କେବଳ ମୋହର ମନବୋଧ କରିବା ନିମନ୍ତେ ମୋତେ ରାଜା ସାହେବ ଏହି କାରଣ ପ୍ରଦର୍ଶାଇ ଥିଲେ । ମୁଁ ଜାଣେ ଯେ ଗଜପତି ମହାରାଜ ଅତି ରକ୍ଷଣଶୀଳ । ସେତେବେଳେ ବାଚସ୍ପତି ପ୍ରଭୃତି ପଣ୍ଡିତମାନେ ସତର୍କ ହୋଇ ରାଜାଙ୍କର ଭ୍ରମ ସଂଶୋଧନ ଚେଷ୍ଟା କରିଥିଲେ । ମୁଁ ପଦକ ଗ୍ରହଣ ନ କରିବାରୁ ପଣ୍ଡିତମାନଙ୍କର ପ୍ରେରଣାରେ ଅନ୍ୟ କୌଶଳ ଅବଲମ୍ବନ କରାଗଲା । ଏକ ସଭାର ଆୟୋଜନ ହେଲା । ତହିଁରେ ଯୁବତୀ ବିବାହର କର୍ତ୍ତବ୍ୟତା ସମ୍ବନ୍ଧରେ ଲେଖକମାନଙ୍କ ପ୍ରବନ୍ଧ ପଠିତ ହେଲା । ମୋହର

ପ୍ରବନ୍ଧ ସନାଶେ ମୋତେ ଉକ୍ତ ପଦକ ପ୍ରଦତ୍ତ ହେଲା । ଏହି ଘଟଣା ସବୁ ଲେଖି ପଦକ ଗ୍ରହଣ କରି ଯାଇ ପାରେ କି ନା ଏ ବିଷୟରେ ବିଭାଗୀୟ କର୍ତ୍ତୃପକ୍ଷଙ୍କ ମତ ଜିଜ୍ଞାସା କଲି । ଅନେକ ଲେଖା ଲେଖି କୈଫିୟତ ପରେ ମୁଁ ଉକ୍ତ ସ୍ୱର୍ଣ୍ଣପଦକ ଗ୍ରହଣ କରି ପାରେ ବୋଲି ଆଦେଶ ହେଲା । ରାଜା ମହୋଦୟ ମାନେ ଏଣେ ପୁରସ୍କାର ଦଅନ୍ତି, ଏବଂ କିଛି ଲାଞ୍ଚ ବା ପାରିତୋଷିକ ଇଚ୍ଛା କରିଥିଲେ ହଜାର ହଜାର ଟଙ୍କା ଦେଇ ପାରିଥାନ୍ତେ । କିନ୍ତୁ ପ୍ରତିଶ୍ରୁତ ଛାତ୍ରବୃତ୍ତି ଟଙ୍କା, ଶିକ୍ଷକର ମାସିକ ବେତନ କିମ୍ବା ପ୍ରାରବ୍ଧ କୌଣସି କାର୍ଯ୍ୟରେ ବ୍ୟୟ ବାବଦ ଟଙ୍କା ଯଥା ସମୟରେ ଦଅନ୍ତି ନାହିଁ । ଅତ୍ୟନ୍ତ ଅଶ୍ରଦ୍ଧା ଓ ଅବହେଳା କରିଥାନ୍ତି । ଏଥିପାଇଁ ଅନେକ ସମୟରେ ମନେ ବେଦନା ଏବଂ ମାନହାନି ଭୋଗ କରିବାକୁ ପଡ଼ିଥାଏ ।

ମୋହର ରେକେନ୍ସି ଜାର୍ଣ୍ଣ ବିଭାଗର ଦଶ୍ୟୋବ ଷ୍ଟେସନରେ ମୁଁ ସାଧାରଣତଃ ଭୋଗବିଳାସୀ ରାଜା ଜମିଦାରଙ୍କ ଦସ୍ତାବିଜ ପତ୍ର ପଛକୁ ରଖି ଗରିବ ପ୍ରଜା ସାଧାରଣଙ୍କ ବିଷୟ ଆଗ ବୁଝିଥାଏ । ଏଥିପାଇଁ ଏହି ଗଜପତି ମହାରାଜ ମୋ ପ୍ରତି ଅନେକ ସମୟରେ ଅତ୍ୟନ୍ତ ବିରକ୍ତ ହୋଇଥାନ୍ତି । ସ୍ୱାର୍ଥପର ପରିଷଦମାନଙ୍କ କଥାରେ 'ପନ୍ତ ଉପର ଅଧିକାରୀମାନଙ୍କ ନିକଟକୁ ମୋ ବିରୋଧରେ ନେଇ ମୋହର ସ୍ଥାନାନ୍ତର କରାଇବା ଚେଷ୍ଟା କରିଥାନ୍ତି । ପୁଣି ଅପର ମୁହୂର୍ତ୍ତରେ ମଣ୍ଡସମିତି ବସାଇ ଲୋକଙ୍କ ମୋହର ପ୍ରଶଂସା କରିଥାନ୍ତି । ଅବ୍ୟବସ୍ଥିତଚିତ୍ତ ଲୋକର ପ୍ରସାଦ ମଧ୍ୟ ଭୟଙ୍କର ବୋଲି କଥା ଅଛି । ମୋଟ ମୋଟି ଦେଖିବାକୁ ଗଲେ ରାଜା ମହୋଦୟଙ୍କର ମୋ ପ୍ରତି ଆନ୍ତରିକ ସ୍ନେହ ଭକ୍ତି ଏବଂ ଗୌରବ ଥାଏ । ତଥାପି ଏହି ଷ୍ଟେସନରୁ ସ୍ଥାନାନ୍ତର ହେବାପାଇଁ ମୁଁ ଅନେକ ବାର ଦରଖାସ୍ତ ଦେଇଥିଲି ।

ପରିଶେଷରେ ୧୯୧୩ ସାଲରେ ମୋହର ଆସିକା ସ୍ଥାନାନ୍ତର ହୁକୁମ ହେଲା । ସେତେବେଳେ ମୋହର ଆନନ୍ଦର ସୀମା ରହିଲା ନାହିଁ । କିନ୍ତୁ ଯେ କୌଣସି ସ୍ଥାନ ହେଉ, ବ୍ୟକ୍ତି ବା ବସ୍ତୁ ବିଶେଷ ହେଉ ଚିର ସହବାସର

ତାହାପ୍ରତି ଆସକ୍ତ ଜନ୍ମେ । ଏହି ରାଜଧାନୀ ଓ ରାଜପରିଷଦମାନଙ୍କର ସମସ୍ତ ସମ୍ବନ୍ଧ, ସମ୍ପର୍କ ଛିଣ୍ଡାଇ ପୁଣି ସ୍ୱପରିଚାଳିତ ଅନେକ ଗୁଡ଼ିଏ ପ୍ରତିଷ୍ଠାନକୁ ଶୈଶବାବସ୍ଥାରେ ଛାଡ଼ିଯିବା କଥାମନେ ପଡ଼ିଲେ ମନଟା ବ୍ୟାକୁଳିତ ହୁଏ । ମୋହର ସ୍ଥାନାନ୍ତର କଥା ୧୫।୨୦ ଦିନ ପର୍ଯ୍ୟନ୍ତ କାହାକୁ ନ କହି ରହିଲି । "ଫୁଟିଲି ଫୁଲ ଜଗତେ ବାସେ ।" କଥାଟା ରଟନା ହୋଇଗଲା । ଅନେକ ଲୋକ ମୋ ପ୍ରତି ଅନେକ ଆଶା କରିଥିଲେ । ସେବେ ନିରାଶ ହେଲେ । ନାନା ଲୋକଙ୍କୁ ନାନା ପ୍ରକାର ଛଳନା ବା କୌଶଳରେ ପ୍ରବୋଧିବାକୁ ହେଲା । ମୋହର ସ୍ଥାନାନ୍ତରରେ ରାଜା ସାହେବ ମଧ୍ୟ ଦୁଃଖିତ ହେଲେ । ମୋହର ବିଦାୟ ଉପଲକ୍ଷରେ ଏକ ସଭାର ଆୟୋଜନ କରି ତହିଁରେ ମତେ କିଛି ସମୁଚିତ ବିଦାୟୀ ଦେବାକୁ ଚେଷ୍ଟା କରୁଥିଲେ । ବିଦ୍ୟାଳୟ, ଛାତ୍ରାବାସ, ଛାତ୍ରବୃତ୍ତିଫଣ୍ଡ, ଟାଉନହଲ, ଗ୍ରାମସଂସ୍କାର ଇତ୍ୟାଦିର ପରିଚାଳନ ସମ୍ବନ୍ଧରେ ରାଜା ମହୋଦୟ ଆପଣାର ପ୍ରତିଜ୍ଞା ଓ ମୋହର ଅନୁରୋଧ ପ୍ରତି ଅନେକ ସମୟରେ ନିତାନ୍ତ ଅବହେଳା ପ୍ରଦର୍ଶନ କରିଥିବା ହେତୁ ଏହି ସ୍ଥାନ ତ୍ୟାଗ କରିବା ମୋହର କର୍ତ୍ତବ୍ୟ । ସେତେବେଳକୁ ରାଜାଙ୍କୁ କହିଲି ଯେ ଯଦି ବିଦାୟ ବିଡ଼ମ୍ବନା ଘେନ କୌଣସି ଆଡ଼ମ୍ବର ଆୟୋଜନ କରାଯାଏ ତେବେ ମୁଁ ଏହିକ୍ଷଣି ବାହାରି ଯିବି । ତା ନ ହେଲେ ମୁଁ ଏଠାରେ ଦୁଇ ଚାରିଦିନ ରହି ଛାତ୍ରଙ୍କ ସେହି ସମ୍ଭାଷଣ ସୁଖ ଅନୁଭବ କରିପାରିବି । ମୋହର ଏହି ଅଭିମତ ଶୁଣି ରାଜା କୌଣସି ବିଦାୟୀ ଯୋଗାଡ଼ କଲେ ନାହିଁ ।

ଦଶପଲ୍ଲା ଗଡ଼ରେ ମୋତେ ପ୍ରାୟ ଚାରିବର୍ଷ ଅବସ୍ଥାନ କରିବାକୁ ପଡ଼ିଥିଲା । ଏହି ଚାରିବର୍ଷକାଳ ମଧ୍ୟରେ ଭଲମନ୍ଦ, ସୁଖ ଦୁଃଖ ସାରାସାର କେତେ ଦିନ କେତେ ରକମର ଘଟଣା ଅନେକ ଲାଗିଅଛି । ତା ସବୁ ଏବେ ମନେ ରଖି ଲେଖି ବସିଲେ ଗୋଟିଏ ବଡ଼ ପୁସ୍ତକ ହେବ, ତେଣୁ ତହିଁରୁ କ୍ଷାନ୍ତ ହେଲି । ଦଶପଲ୍ଲା ଷ୍ଟେସନକୁ ଗଲାବେଳେ ମୋହର ବେତନ ଥିଲା ମାସିକ ନବେ ଟଙ୍କା । ଏହି ସ୍ଥାନରେ ଆଉ ଦଶଟଙ୍କା ମାତ୍ର ପ୍ରମୋସନ ପାଇଥିଲି । ଏହି ବେତନ ବୃଦ୍ଧି ହେବା ଦିନ ମୋହର ଗୁମାସ୍ତାମାନଙ୍କୁ ଗୋଟିଏ ଲେଖାଏଁ ୱାଚ ବା ଘଣ୍ଟା ଦେଇଥିଲି ।

ମୁଁ ଯାହା ଆଦାୟ କରେ ମୋ ସ୍ତ୍ରୀ ହାତରେ ଦେଇ ଦିଏ । ବଡ଼ଖେମଣ୍ଡି ରାଜାଙ୍କଠାରୁ ଏକଶତ ଟଙ୍କାର ସ୍ୱର୍ଣ୍ଣ ଶୃଙ୍ଖଳ ଓ ପଦକ ମଧ୍ୟ ମୋ ସ୍ତ୍ରୀ ହସ୍ତରେ ଦେଇ ପଠାଇଥିଲେ । ଏ ଶୃଙ୍ଖଳଟା ଧରିବାକୁ ମୋତେ ଲଜ୍ଜା ବୋଧ ହୁଏ । ମୋ ସ୍ତ୍ରୀ ସବୁ ଖର୍ଚ୍ଚ ପତ୍ର ଚଲାନ୍ତି । ମୁଁ କେବେହେଲେ ଟଙ୍କା ତଙ୍କ ନିଜ ହାତରେ ରଖି ନିଜେ ଖର୍ଚ୍ଚ କରି ଜାଣେ ନାହିଁ । ମୋ ହାତରେ ଆୟ ଅପେକ୍ଷା ବ୍ୟୟ ଭାଗଟା ଟିକିଏ ବେଶୀ ହୋଇ ପଡ଼ିଥାଏ । ମୋହର ସ୍ତ୍ରୀ ପାଖରେ ନଥିଲା ବେଳେ ମୁନିବର ନୌକର ହାତେ ମୁଁ ମୋହର ପେଡ଼ି ସିନ୍ଦୂ ଚାବି ଦେଇ ଦେଇଥାଏ । ସେ ଖର୍ଚ୍ଚ ପତ୍ର ଚଲାଇ ମୋତେ ଯେଉଁ ହିସାବ ସମଝାଇ ଦିଅନ୍ତି ତାହାହିଁ ଅଗତ୍ୟା ସ୍ୱୀକାର କରିଥାଏ । ଏଣେ ଆମଦର ବ୍ୟବହାର ବୁଝିବା ପାଇଁ ମୋହର ପ୍ରିୟ ଏବଂ ବିଶ୍ୱାସପାତ୍ର କୃଷ୍ଣ ପଣ୍ଡାଙ୍କୁ ନିଯୁକ୍ତ କରିଥାଏ । ଏହାଙ୍କର ହିସାବ ପତ୍ର ଲେଖାଲେଖି ଦେଖିବାରେ ମଧ୍ୟ ମୋହର ଅବହେଳା । ଅନେକ ସମୟରେ ଏହାଙ୍କର ମଧ୍ୟ ତ୍ରୁଟି ଅଯଥା ଲୋଭ ଓ ଦ୍ରୋହାଚରଣ ଦେଖିଥାଏ । ତଥାପି ଏହାଙ୍କୁ କାର୍ଯ୍ୟରୁ ଅନ୍ତର କରି ନଥାଏ । ଯଦି କିଛିଦିନ ଏହାଙ୍କ ପ୍ରତି ବିମନା ହୋଇ ଏହାଙ୍କୁ ଅନ୍ତର କରି ଅନ୍ୟ ଲୋକଙ୍କୁ ନିଯୁକ୍ତ କରିଥାଏ, ସେହି ଲୋକ ମୋ ପ୍ରତି ଅଧିକ ଦ୍ରୋହାଚରଣ କରିଥିବା ଏବଂ ମୋହର କ୍ଷତି କରିଥିବା ଦେଖାଯାଏ । ଜଗତରେ ସବୁକଥା ଏହି ପରି—"ଯାଏ ସାତ, ଯାଏ ପଞ୍ଚର, ଯାଏ ଯନ୍ତା, ଯାଏ ପଥର" । ଠେଙ୍ଗାଧରା ଗ୍ରାମ ନିବାସୀ କଇଦାସ ନାମକ ଜଣେ ବ୍ୟକ୍ତିକି କିଛିଦିନ ଗୁମାସ୍ତା ନିଯୁକ୍ତ କରି କ୍ଷତିଗ୍ରସ୍ତ ହୋଇଥିଲି । ଶେଷରେ ପୁଣି ସେହି କୃଷ୍ଣ ପଣ୍ଡାଙ୍କୁ ଗୁନ୍ତାଦାର, ଗୁମାସ୍ତା, ଗୁଲକ ଓ ବିଶ୍ୱସ୍ତ [illegible]ଲର ରୂପେ ନିଯୁକ୍ତ କଲି ।

ମୋର ପରିବାର ମଧ୍ୟରେ କେବଳ ତିନିଜଣ ମାତ୍ର । ମୁଁ, ମୋହର ସ୍ତ୍ରୀ ଏବଂ ଏକମାତ୍ର ସନ୍ତାନ ମାଳତୀ ନାମ୍ନୀ କନ୍ୟା । ପନ୍ଦର ବର୍ଷଠାରୁ ପଚିଶ ବର୍ଷ ବୟସ ପର୍ଯ୍ୟନ୍ତ ମତେ ପାଠପଢ଼ା ଲାଗି ବିଦେଶରେ ରହିବାକୁ ପଡ଼ିଥିଲା । ପୁଣି ପଚିଶଠାରୁ ପ୍ରାୟ ପଞ୍ଚାଶ ବର୍ଷ ପର୍ଯ୍ୟନ୍ତ ସରକାରୀ କାର୍ଯ୍ୟରେ ନାନା ସ୍ଥାନରେ ରହିବାକୁ ପଡ଼ିଥିଲା । ତଥାପି ନିଜ ଗ୍ରାମରେ ପୁଣି ଛତାବର ଓ ରସୁଲକୁଣ୍ଡାଠାରେ

ନୂତନ ପକ୍କା ଗୃହ ନିର୍ମାଣରେ ମୁଁ ଅନେକ ଧନ ବ୍ୟୟ କରି ସାରିଅଛି । ଶୁଦ୍ଧ ଶ୍ରାଦ୍ଧରେ, ତୀର୍ଥ ଭ୍ରମଣରେ ଏବଂ ନୂତନ ଗୃହ ନିର୍ମାଣରେ ପୈତୃକ ସମ୍ପତ୍ତି ଅର୍ଥାତ୍ ଜମିବାଡ଼ିରୁ ଉତ୍ପନ୍ନ ହେବା ଧନର ଅଧିକାଂଶ ବ୍ୟୟ ହୋଇ ଯାଇଥିଲା । ପୁରୁଷୋତ୍ତମପୁରଠାରେ ଥିଲାବେଳେ ଛଅମାସ ଛୁଟି ନେଇ ପ୍ରୟାଗ ଆଦି ନାନା ତୀର୍ଥ ଭ୍ରମଣ କରିଥିଲି । ଏହି ସମୟରେ ହରାବରଠାରେ ପକ୍କାଗୃହ ନିର୍ମାଣ କରାଇବାକୁ ପଡ଼ିଥିଲା । ଏଥିରେ ପ୍ରାୟ ଦୁଇ ହଜାର ପର୍ଯ୍ୟନ୍ତ ଖର୍ଚ୍ଚ ହୋଇ ଯାଇଥିଲା । ଦଶପଲ୍ଲଣ୍ଡିଠାରେ ଥିଲାବେଳେ ରସୁଲକୁଣ୍ଡା ଘର ମରାମତି ଓ ନୂତନ ଘର ତିଆରିରେ ପ୍ରାୟ ଅଢ଼େଇ ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା ।

ମୋର ସ୍ତ୍ରୀ ଆସିବାର ପ୍ରାୟ ଛଅ ବର୍ଷ ପର୍ଯ୍ୟନ୍ତ ଆମର କୌଣସି ସନ୍ତାନ ହୋଇ ନଥିଲା । ପ୍ରଥମ ଗର୍ଭରେ ଏକ କନ୍ୟା ଜାତ ହେଲା । ତାହାର ନାମ ମାଳତୀ । ଏହି କନ୍ୟାପରେ ଆଉ ଏକ କନ୍ୟା ଓ ତାପରେ ଏକ ପୁତ୍ରଜାତ ହେଲା । କିନ୍ତୁ ଶେଷ ଦୁଇଟି ସନ୍ତାନ ଶୈଶବାବସ୍ଥାରୁ ମୃତ ହୋଇଗଲେ । ସେହି ଦିନାବଧି ଅନ୍ୟ କୌଣସି ସନ୍ତାନ ନାହିଁ । ୧୯୧୧ ସାଲରେ ମାଳତୀ ନାମ୍ନୀ ଏକମାତ୍ର କନ୍ୟାର ବିବାହ ହେଲା ନିକଟବର୍ତ୍ତୀ ଇର୍ଙ୍ଗନାଠି ଗ୍ରାମରେ । ମୋହର ଇଚ୍ଛା ବିରୋଧରେ ଏହି ବିବାହ ନିର୍ବନ୍ଧ ହୋଇଗଲା । ଦୂର ଦେଶରୁ ଅର୍ଥାତ୍ ଜିଲ୍ଲାନ୍ତରରୁ ଅନ୍ୟ କୌଣସି ଶ୍ରେଣୀ ବ୍ରାହ୍ମଣ ଘରେ ଏହି ବିବାହ ସମ୍ବନ୍ଧ ସ୍ଥାପନ କରିବାକୁ ମୁଁ ଅନେକ ଚେଷ୍ଟାକଲି । ସବୁ ବିଫଳ ହେଲା, ମୋହ ସ୍ତ୍ରୀ ଆପତ୍ତି କଲେ, ପୁଣି ଅନ୍ୟାନ୍ୟ ଶିକ୍ଷିତ ବନ୍ଧୁମାନେ ମଧ୍ୟ ମୋହର ଏହି ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ଏହି ବିବାହକୁ ଲୋକମାନେ କହନ୍ତି ପ୍ରଜାପତି ଘଟଣା, ଅର୍ଥାତ୍ ଯାହା ହେବାର ଥାଏ ତାହା ହୋଇଯାଏ । ତହିଁରେ ପିତା ମାତାଙ୍କର ମଧ୍ୟ କୃତିତ୍ୱ ରହିପାରେ ନାହିଁ । ମାଳତୀ ଏକମାତ୍ର ସନ୍ତାନ ଥିବାରୁ ତାହାର ଶ୍ୱଶୁର ଘରରେ ଟିକିଏ ବେଶୀ ଧନ ବ୍ୟୟ କରିବାକୁ ଇଚ୍ଛା ହେଲା । ମୋହର ସ୍ତ୍ରୀ ବ୍ୟୟ ସଂକୋଚ କରିବାକୁ ମତେ ସର୍ବଦା ଉପଦେଶ ଦିଅନ୍ତି । ସେ ମଧ୍ୟ ଆପଣାର ଏକମାତ୍ର କନ୍ୟା ବିବାହରେ ଟିକିଏ ଅଧିକ ଧନବ୍ୟୟ କରିବାକୁ ମନେ ପ୍ରବର୍ତ୍ତାଇ ଦେଲେ । "ଲଙ୍କାରୁ ରାଜ୍ୟ ସରେ,

ଆମେ କଣ ଆଉ ପୃଥ ବ୍ରତ ନା ହିଁଅ ବିଭା କରିବା ଯେ ଏହି ଏକମାତ୍ର ବିବାହରେ ବ୍ୟୟକୁଣ୍ଠିତ ହେବା ।" ଆମ ସ୍ତ୍ରୀଙ୍କର ଏହି ପ୍ରବୃତ୍ତିନା ମୋହ ଇଚ୍ଛାକୁ ଅଧିକତର ବଳବତୀ କରିଥିଲା । ଏହି ବିବାହରେ ବାରଶତ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୋଇ ଯାଇଥିଲା । ଆମ ଦେଶରେ, ଜାତିରେ ବା ଶ୍ରେଣୀରେ ବ୍ରତ, ବିବାହାଦି ନିୟମରେ ଏକଦିନ ମାତ୍ର ଭୋଜି ଦେବାକୁ ହୁଏ । ବ୍ରାହ୍ମଣ, ଶୂଦ୍ର, ବନ୍ଧୁ, ସ୍ନେହୀ, ମିତ୍ର, ବରଯାତ୍ରୀ, କନ୍ୟାଯାତ୍ରୀ ସମସ୍ତଙ୍କୁ ସେହି ବିବାହ ବା ବ୍ରତ ଏକ ଦିନରେ ଭୋଜି ଦିଆଯାଏ । ବୈଦିକ କର୍ମକାଣ୍ଡ, ଗୀତ ନୃତ୍ୟାଦି ଆମୋଦ, ବିବିଧ ଶ୍ରେଣୀର ଲୋକମାନଙ୍କର ଭୋଜନ ଏହିସବୁ ଏକାଦିନରେ ହେବାଯୋଗୁଁ କୌଣସି ସୁଖ ସ୍ୱାଚ୍ଛନ୍ଦ୍ୟ ଏବଂ ସୁବିଧା ଶୃଙ୍ଖଳା ରହିପାରେ ନାହିଁ । ବାଦ୍ୟକାରୀଏ ଖାଇଲା ବେଳକୁ ରାତିପହି ଯାଉଥାଏ, କୁଆ ବୋବାଇଥାଏ । ଅନେକ ଲୋକ ଅଜୀର୍ଣ୍ଣ ରୋଗରେ ପୀଡ଼ିତ ହୁଅନ୍ତି ସମସ୍ତଙ୍କର ଯଥାବିଧି ସତ୍କାର ହୋଇ ପାରେନାହିଁ । ଏହି ପ୍ରଚଳିତ ନିୟମ ବିରୋଧରେ ୪ ଦିନ ଭୋଜନ ଦେବାକୁ ହୋଇଥିଲା । ପ୍ରଥମ ଦିନ ବରଯାତ୍ରୀ ଏବଂ ଆପଣାର ବଂଶ ଓ ବନ୍ଧୁ ବର୍ଗଙ୍କୁ, ଦ୍ୱିତୀୟ ଦିନ ସ୍ନେହବନ୍ଧୁ ଓ ମିତ୍ରମାନଙ୍କୁ, ତୃତୀୟ ଦିନ ଶୂଦ୍ରାଦି ଇତର ଜାତିର ଲୋକମାନଙ୍କୁ, ପୁଣି ଚତୁର୍ଥ ଦିନ ଶାସନୀ ବ୍ରାହ୍ମଣମାନଙ୍କୁ ଏହି କ୍ରମରେ ଭୋଜି ଦିଆ ଯାଇଥିଲା । ଏହି ବିବାହର ସ୍ମାରକ ସ୍ୱରୂପ ଦୁଇଶତ ଟଙ୍କା ବ୍ୟୟରେ ଆମ୍ଭଗ୍ରାମ ପୂର୍ବଦିଗ ଖରଖରି ପାଣି-ନାଳରେ ଏକ ସାଙ୍କୁ ବା ବନ୍ଧ ପକାଇ ଦିଆଗଲା । ବର୍ଷାଦିନରେ ପ୍ରାୟ ୬ ମାସ-କାଳ ଲୋକେ ଏହି ଖରଖରି ଭିତରେ ଆଣ୍ଠୁଏ ଜଙ୍ଘେ, ଅଣ୍ଟେ ପାଣିରେ ପଶି ଯିବାଆସିବା କରନ୍ତି । ବହୁ ଅସୁବିଧା ଓ କଷ୍ଟ ଭୋଗ କରନ୍ତି । ଏହି ସାଙ୍କୁ ପଡ଼ିଯିବା ଦିନୁଁ ଲୋକେ ଏବେ ସୁଖ ସ୍ୱାଚ୍ଛନ୍ଦ୍ୟରେ ଏବାଟେ ଯିବାଆସିବା କରୁଛନ୍ତି ।

୧୯୧୮ ସାଲରେ ଦଶପଲ୍ଲା ଗଡ଼ଠାରୁ ମୋହର ଆସିକା ସ୍ଥାନାନ୍ତର ହେଲା । ଋଷିକୂଲ୍ୟା ନଦୀ ତୀରବର୍ତ୍ତୀ ଆସିକା ନଗରସ୍ଥ ସବ୍‌ରେଜେଷ୍ଟ୍ରି ଅଫିସରେ ମତେ ନବବର୍ଷ ରହିବାକୁ ପଡ଼ିଲା । ଏଠାରେ ସୁଖ ସ୍ୱାଚ୍ଛନ୍ଦ୍ୟ

ସହକାରେ ଉତ୍କଳ, ସରକାରୀ କର୍ମଚାରୀ, ପଣ୍ଡିତ, ତାଲୁକାଦାର ଓ ଜମିଦାର ଇତ୍ୟାଦି ବିବିଧ ଶ୍ରେଣୀର ଲୋକଙ୍କ ସଙ୍ଗରେ ବିବିଧ କାର୍ଯ୍ୟାନୁଷ୍ଠାନରେ ଗତବର୍ଷ କାଳ ପରିଚୟ ବଢ଼ିଗଲା । ଉତ୍କଳ ହଳଧର ବାବୁଙ୍କ ଯତ୍ନରେ ଏଠାରେ ଏଥି ପୂର୍ବରୁ ମ୍ୟାକ୍ ମାଇକେଲ ଆଙ୍ଗ୍ଲୋ ସଂସ୍କୃତ ବିଦ୍ୟାଳୟ ସ୍ଥାପିତ ହୋଇଅଛି । ଏହି ସ୍କୁଲରେ ଉତ୍କଳ ହଳଧର ବାବୁ, ବଟକୃଷ୍ଣ ବାବୁ ଏବଂ ମୋତେ ପାଳିକରି ଶିକ୍ଷକତା କରିବାକୁ ପଡ଼ୁଥାଏ । ହଳଧର ବାବୁ ଇଂରାଜୀ ସିଦ୍ଧାନ୍ତ, ବଟକୃଷ୍ଣ ବାବୁ ଗଣିତ ଏବଂ ମୁଁ ଓଡ଼ିଆ ସାହିତ୍ୟ ଶିକ୍ଷା ଦେଉଥାଉଁ । ଏହି ସ୍ଥାନରେ ପ୍ରତିଷ୍ଠିତ ଉତ୍କଳ ଗ୍ରନ୍ଥ ବୃତ୍ତି ପରୀକ୍ଷା ପରିଚାଳନାରେ ଆମ୍ଭେମାନେ ଯୋଗ ଦେଉଥାଉଁ । ବିବାହିତ ଛାତ୍ରମାନଙ୍କୁ ବୃତ୍ତି ଦିଆ ନଯାଉ ବୋଲି ମୁଁ ଥରେ ପ୍ରସ୍ତାବ କଲି । ଏହି ପ୍ରସ୍ତାବ ସଭାରେ ମଞ୍ଜୁର ହୋଇଥିଲା । ସ୍ଥାନୀୟ ଶିକ୍ଷିତ ଓଡ଼ିଆ ଲୋକମାନଙ୍କର ଏହି ସ୍କୁଲ ଗୃହରେ ପ୍ରତି ରବିବାର ଦିନ ମିଳନ ହେଉଥାଏ । ଏହି ମିଳାମିଶା ବେଳେ ପ୍ରବନ୍ଧପାଠାଦି ସାହିତ୍ୟ ଚର୍ଚ୍ଚା ହେଉଥାଏ । ଏହି ସଭାରେ ଦିନେକର ମୋର ପ୍ରସ୍ତାବ କ୍ରମେ ଏଠାରେ କୃଷ୍ଣ ସିଂହ ପାଠାଗାର ସ୍ଥାପନ କରିବା ସ୍ଥିର ହେଲା । ଆମ୍ଭେମାନେ ଧରାକୋଟ ଯାଇ ରାଜାଙ୍କ ନିକଟରେ ଏହି ପ୍ରସ୍ତାବ କରି ତାହାଙ୍କର ଅର୍ଥ ସାହାଯ୍ୟ ପ୍ରାର୍ଥନା କରିଥିଲୁ । ଏଥିରେ ରାଜା ମହୋଦୟ ଏକହଜାର ଟଙ୍କା ଏବଂ ଘରପାଇଁ ଲାଗିବା କାଠତକ ଦେବାକୁ ସ୍ୱୀକାର କରିଥିଲେ । ଦିନେ ମାନ୍ଦ୍ରାଜ ସରକାର ଶାସନ ସଭାର କାର୍ଯ୍ୟକାରୀ ସଭ୍ୟ ଶ୍ରୀଯୁକ୍ତ ଶିବସ୍ୱାମୀ ଆୟାର ଆସିବାକୁ ବିଜେ କରିଥିଲେ । ଏହି ସମୟରେ ସ୍ଥାନୀୟ ସବମାଜିଷ୍ଟ୍ରେଟ ବାବୁ ଦୀନବନ୍ଧୁ ପଣ୍ଡା ଏବଂ ମୁଁ ଧରାକୋଟ ଯାଇ ରାଜାଙ୍କ ନିଜ ଏହି ସରକାରୀ ସଦସ୍ୟଙ୍କ ଦ୍ୱାରା ପ୍ରସ୍ତାବିତ ପାଠାଗାରର ଶୁଭ ଦିଆ ଅନୁଷ୍ଠାନର ଆୟୋଜନ କରିଥିଲୁ । ଶିବସ୍ୱାମୀ ଆୟାର ପାଠାଗାର ଗୃହନିର୍ମାଣରେ ଶୁଭଦେଲେ । ଗୃହନିର୍ମାଣ ବ୍ୟୟ ସକାଶେ ରାଜା ମହୋଦୟ ଦୋହାତେ ଦୁଇ ଶତ ଟଙ୍କା ଦେଇଥିଲେ । ଜିଲ୍ଲା ଟଙ୍କା ହରିବାବୁ ଜମା ରଖା ଯାଇଅଛି । ନାନାବିଧ ପ୍ରତିବନ୍ଧକ ଯୋଗୁଁ ଏ ପର୍ଯ୍ୟନ୍ତ ଗୃହ ନିର୍ମାଣ ହୋଇପାରିନାହିଁ । ଭବିଷ୍ୟତରେ କଣ ହେବ କିଏ କହି-ପାରେ ! ଉକ୍ତ ଆଙ୍ଗ୍ଲୋ ସଂସ୍କୃତ ବିଦ୍ୟାଳୟ ବ୍ୟୟ ନିର୍ବାହ ସକାଶେ ଲୋହଲ

ମୂର୍ତ୍ତିଭିକ୍ଷା ସଂଗ୍ରହର ଆୟୋଜନ କରାଯାଇଥିଲା । ମୁଁ ତହିଁର ସମ୍ପାଦକ ଥିଲି । ଗୃହଳ ସଂଗ୍ରହରୁ କୋଡ଼ିଏ ପଚାଶ ଟଙ୍କା ପର୍ଯ୍ୟନ୍ତ ପ୍ରାପ୍ତ ହୋଇଥିଲା । ଏହି ସ୍କୁଲ କାର୍ଯ୍ୟରେ ସହରର ସଦସ୍ୟ କିଛି ଦିନ କାର୍ଯ୍ୟ କରିଥିଲେ । ମୁଁ କିଛି କାଳ ପରାଗେ ଛୁଟୀରେ ବାହାରି ଗଲାରୁ ଗୃହଳ ମୂର୍ତ୍ତି ଭିକ୍ଷା ରହିତ ହୋଇଗଲା । ଦୁଃଖର ବିଷୟ ଏହି ଯେ ଅନେକ ସ୍ୱାଧୀନଜୀବୀ ସଙ୍ଗତିସମ୍ପନ୍ନ ଓକିଲମାନେ ଏହି ପରି ସତ୍‌କାର୍ଯ୍ୟରେ ସହୃଦୟ ଯୋଗ ଦିଅନ୍ତି ନାହିଁ । ଏହି ସଂସ୍କୃତ ସ୍କୁଲ ପାଇଁରେ ହରିବାବୁ କେତେକ ଭୂସମ୍ପତ୍ତି ଦାନ କରି ଅଶେଷ ଧନ୍ୟବାଦର ପାତ୍ର ହୋଇଛନ୍ତି । ଏହି ପାଇଁ ଦକାରେ ମୁଁ ତିନିଶହ ଟଙ୍କା ଦେଇଅଛି । ବଟକୃଷ୍ଣ ବାବୁ ଏହି ସ୍କୁଲର ସମ୍ପାଦକ ନିଯୁକ୍ତ ଥିଲେ ହେଁ କେବଳ ହରିବାବୁଙ୍କ ଇଚ୍ଛାନୁସାରେ ସ୍କୁଲର କାର୍ଯ୍ୟ ଏବଂ ଶିକ୍ଷକ ନିଯୋଗ ଇତ୍ୟାଦି ଚଳେ । ଆସିକାର ମଧ୍ୟ ସୁନାମ ଡକାର ସାହାରେ ମୁଁ ଏକ ବାଳିକା ବିଦ୍ୟାଳୟ ସ୍ଥାପନ କରି ପ୍ରାୟ ୫୦ ଟଙ୍କା ପର୍ଯ୍ୟନ୍ତ ବ୍ୟୟ କଲି । କିନ୍ତୁ ସ୍ଥାନୀୟ ଶିକ୍ଷିତ ଲୋକମାନଙ୍କର ସହାନୁଭୂତି ଓ ସାହାଯ୍ୟାଭାବରୁ ପ୍ରଧାନ ଅର୍ଥାଭାବରୁ ଉପଯୁକ୍ତ ଶିକ୍ଷା ନ ମିଳିବା ଯୋଗୁଁ କିଛି କାଳ ପରେ ଉକ୍ତ ସ୍କୁଲଟି ଉଠିଗଲା । ଗଭର୍ଣ୍ଣମେଣ୍ଟ ସ୍କୁଲ ସ୍ଥାପନ ସକାଶେ ଆମ୍ଭେମାନେ କର୍ତ୍ତୃପକ୍ଷଙ୍କ ନିକଟରେ ଆବେଦନ କରିଥିଲୁ । ସୁଖର ବିଷୟ ଉକ୍ତ ଆବେଦନ କ୍ରମେ ଆଜି ଏଠାରେ ଗଭର୍ଣ୍ଣମେଣ୍ଟ ଓଡ଼ିଆ ବାଳିକା ସ୍କୁଲ ସ୍ଥାପିତ ହୋଇଅଛି । ଧରାକୋଟ ରାଜସଭା ପଣ୍ଡିତ ବାସୁଦେବ ତର୍କାଳଙ୍କାର ମନା ବା ବାହାର ହୋଇ ଅର୍ଥାତ୍ ରାଜ ସଭାରୁ ବିତାଡ଼ିତ ହୋଇ ଆସି ଏଠାରେ କିଛିକାଳ ଅବସ୍ଥାନ କରନ୍ତି । ଏହାଙ୍କ ପ୍ରସ୍ତାବ କ୍ରମେ ପ୍ରାଚୀନ ଓ ଆଧୁନିକ ଉଭୟ ଶ୍ରେଣୀର ପଣ୍ଡିତମାନଙ୍କୁ ନେଇ ଏକ ପଣ୍ଡିତ ସଭାର ଅଧିବେଶନ କରାଯାଇଥିଲା । ଏକମାତ୍ର ଅଧିବେଶନ ପରେ ଆଉ ସଭା ବସିଲା ନାହିଁ । ଉଦ୍ୟୋକ୍ତାମାନଙ୍କ ଯତ୍ନ, ଉତ୍ସାହ ଓ ଅଧ୍ୟବସାୟ ଅଭାବରୁ ଏହିପରି ଅସଂଖ୍ୟ ଅନୁଷ୍ଠାନ ଅକାଳରେ ବିଲୀନ ହୋଇଯାଏ ।

•

ମୋ ଲେଖା ପଢ଼ା କଥା—ମୁଁ ବ୍ରହ୍ମପୁରଠାରେ ମାଟ୍ରିକ୍ୟୁଲେସନ କ୍ଲାସରୁ ଛାଡ଼ି ଥିଲି ଦିନୁ ଖବର କାଗଜମାନଙ୍କରେ ନାନାବିଧ ପ୍ରବନ୍ଧ ଲେଖୁଥାଏ ।

ସେହିସବୁ ପ୍ରବନ୍ଧାବଳୀ କେତେ କୁଆଡ଼େ ଗଲାଣି । ଅବଶିଷ୍ଟ ଯାହା ଅଛି ତାହା ପୁସ୍ତକାକାରରେ ଛାପି ଦେବା ଇଚ୍ଛା ଅଛି । କିନ୍ତୁ ସମୟ ସୁବିଧା ଓ ଅର୍ଥାଭାବରୁ ଇଚ୍ଛାଟା କାର୍ଯ୍ୟରେ ପରିଣତ ହୋଇପାରିନାହିଁ । ଦେଖାଯାଉ ଭବିଷ୍ୟତରେ କଣ ହେବ ! ମୁଁ ପୁରୁଷୋତ୍ତମପୁରର ସବ୍‌ରେଜିଷ୍ଟ୍ରାର ଥିଲାବେଳେ ସେଠା ମର୍ଦ୍ଦରାଜ ରଙ୍ଗାଳୟର ନୃତ୍ୟ ଗୀତ ଦେଖି ଶୁଣି ବିଧବା ବିବାହ ବିଷୟ ଗର୍ଭିତ ଶଶିକଳା ପରିଣୟ ନାମକ ଏକ ନାଟକ ରଚନା କରି ଖଲ୍ଲିକୋଟ ମର୍ଦ୍ଦରାଜ ପ୍ରେସରେ ଛପାଇ ଥିଲି । ମୁଁ ରାଗ ରାଗିଣୀ ତାଳ କାଳ ନିର୍ଣ୍ଣୟ ଭଲ ଜାଣେ ନାହିଁ । ତଥାପି ମନର ଆବେଗ ସମ୍ଭାଳି ନ ପାରି ସମାଜ ସଂସ୍କାର କାମନାରେ କେତେ ଗୁଡ଼ିଏ ଗୀତ ଲେଖି ସଂସ୍କାର ସଙ୍ଗୀତାବଳୀ ନାମରେ ଖଣ୍ଡିଏ ପୁସ୍ତକ ବେଲଗୁଣ୍ଠା ପ୍ରିଣ୍ଟିଂ କମ୍ପାନି ଯନ୍ତ୍ରାଳୟରେ ଛପାଇ ପ୍ରକାଶ କରିଥିଲି । ଶୃଙ୍ଗାର ରସାତ୍ମକ ଅଶ୍ଳୀଳ ଭାବପୂର୍ଣ୍ଣ ଗୀତଗୁଡ଼ାଏ ଲୋକେ ଗାଆନ୍ତି । ବେଶ୍ୟାମାନେ, ପିଲାମାନେ ସବୁଠି ଏହି ଚଉପଦୀ ଗୀତ ଗାଇ ଯୁବକମାନଙ୍କୁ ଭୁଲାଇ ପଥ ଭ୍ରଷ୍ଟ କରି ପକାନ୍ତି । ସଂସ୍କାର ସଙ୍ଗୀତାବଳୀ ଶୁଣିଲେ ଲୋକମାନଙ୍କର ମନ ସମାଜ ସଂସ୍କାର ପ୍ରତି ଆକୃଷ୍ଟ ହେବ । ଏହି ଭାବନାରେ ସଂସ୍କାର ସଙ୍ଗୀତାବଳୀ ପୁସ୍ତକ ରଚନା କରି ପ୍ରକାଶ କରିଥିଲି । ଦିଗପହଣ୍ଡି ଗଡ଼ରେ ସବ୍‌ରେଜିଷ୍ଟ୍ରାର ଥିଲାବେଳେ ପୁରୀ ମୁକ୍ତିମଣ୍ଡପ ସଭାକୁ ଲକ୍ଷ୍ୟ କରି ନିବେଦନ ନାମକ ଏକ ପଦ୍ୟ ପୁସ୍ତକ ଲେଖି ଉତ୍କଳ ସାହିତ୍ୟ ପ୍ରେସରେ ଛପାଇଥିଲି । ମୟୂରଭଞ୍ଜ ମହାରାଜା ରାମଚନ୍ଦ୍ର ଦେବ ଭଞ୍ଜଙ୍କ ନାମରେ ପୁସ୍ତକଟା ଉତ୍ସର୍ଗୀକୃତ ହୋଇଥିଲା । ଆମ ଘରେ ଗୋଟିଏ ଶୁଆଥିଲା । ସେହି ଶୁକପକ୍ଷୀର ବିୟୋଗରେ ଶୁକପକ୍ଷୀ ନାମରେ ଏକ ପଦ୍ୟ ଲେଖିଥିଲି । ଆସିକାରେ ଦୁଇଖଣ୍ଡ ପୁସ୍ତକ ଲେଖିଥିଲି । ଖଣ୍ଡିଏ ଦସ୍ତାବିଜ ବିଷୟ, ଅନ୍ୟଟି ପିତାମ୍ବର ଓ ସ୍ୱାସ୍ଥ୍ୟରକ୍ଷା । ଗଞ୍ଜାମ ଜିଲାର ତେଲୁଗୁମାନେ ସରକାରୀ କାର୍ଯ୍ୟରେ ନିଯୁକ୍ତ ଥିବାଯୋଗୁଁ ସ୍କୁଲ କଚେରୀରେ ଓଡ଼ିଆ ଭାଷାର ବ୍ୟବହାର ହୁଏ ନାହିଁ । ସକଳ ବିଷୟରେ ଓଡ଼ିଆ ଭାଷା ତେଲୁଗୁ ମିଶା ହୋଇ କଦର୍ଯ୍ୟ କଦାକାର ଧାରଣ କରିଅଛି । ଗଞ୍ଜାମରେ ଓଡ଼ିଆ ଭାଷାର ଚର୍ଚ୍ଚା ସୁରକ୍ଷା ଓ ସଂସ୍କାର ଆବଶ୍ୟକ । ଦସ୍ତାବିଜ ଲେଖା ବିଷୟରେ ଓଡ଼ିଆରେ କୌଣସି ଆଦର୍ଶ ନଥିଲା । ସୁତରାଂ

ଦସ୍ତାବିଜ ଲିଖନ, ତା ଆଇନ ଓ ରେଜେଷ୍ଟ୍ରି ପ୍ରଣାଳୀ ବିଷୟ ନାମରେ ଏକ ପୁସ୍ତକ ଲେଖି ଆସିକାର କିଶୋର ଚନ୍ଦ୍ର ଭଞ୍ଜ ଛାପାଖାନାରେ ମୁଦ୍ରଣ କରାଗଲା । ସୁଖର ବିଷୟ, ଏହି ପୁସ୍ତକ ଆଦର୍ଶରେ ଗଞ୍ଜାମର କଚେରିଆ ଭାଷା କ୍ରମେ କ୍ରମେ ସଂଶୋଧିତ ହେଉଅଛି । ସ୍ଥାନୀୟ ସ୍କୁଲ ସମୂହର ସବ ଆସିଷ୍ଟାଣ୍ଟ ଇନସପେକ୍ଟର ବାବୁ ଚକ୍ରପାଣି ପ୍ରଧାନଙ୍କ ଅନୁରୋଧରେ ଶିଷ୍ଟାଚାର ଓ ସ୍ୱାସ୍ଥ୍ୟରକ୍ଷା ନାମକ ତିନି ପୁସ୍ତକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ଉପଯୋଗାର୍ଥେ ରଚନାକରି ଡ଼ାଇରେକ୍ଟର ସାହେବଙ୍କ ମଞ୍ଜୁରୀ କ୍ରମେ ମ୍ୟାକ୍ମିଲନ୍ ଛାପାଖାନାରେ ମୁଦ୍ରିତ କରାଇବାକୁ ହେଲା । ଏହାର ଦ୍ୱିତୀୟ ଭାଗ ଲେଖି ମୁଦ୍ରିତ କରାଇବା ବାସନା ଅଛି । ପୁଷ୍ପଶୋକ ଓ ଖଡ଼ୁବାନ୍ଧ ନାମରେ ଦୁଇଖଣ୍ଡ କ୍ଷୁଦ୍ର ପଦ୍ୟ ପୁସ୍ତକ ଲେଖା ହୋଇ ପ୍ରକାଶିତ ହେଲା । ମୋହର କନ୍ୟା ମାଳତୀର ବିଶ୍ୱନାଥ ନାମକ ଏକ ଶିଶୁ ପୁଅ ବିୟୋଗରେ ପୁଷ୍ପଶୋକ ରଚିତ ହୋଇଥିଲା । ଆମ ଦେଶର ଶୂଦ୍ର ସ୍ତ୍ରୀମାନେ ପିତ୍ତଳ ଖଡ଼ୁ ଲଗାନ୍ତି । ଏହି ପିତ୍ତଳ ଖଡ଼ୁବାନ୍ଧ ବଡ଼ଭାରି ଏବଂ ଅନେକ କ୍ଷତିକାରକ । ଏହି ଖଡ଼ୁ ବ୍ୟବହାର କରିଦେଇ କାଚପିନ୍ଧା ପ୍ରଚାର ଉଦ୍ଦେଶ୍ୟରେ ଖଡ଼ୁବାନ୍ଧ ରଚିତ ହୋଇଥିଲା । ଆସିକାରେ 'ମୋ ମାତୃଭାଷା' ନାମରେ ଗୋଟିଏ ପୁସ୍ତକ ଲେଖିଥିଲି ।

୧୯୧୭ ରେ ମୁଁ ଫର୍ଲୁଟୀ ନେଇ ମନ୍ଦାରଠାରେ ଥିବାବେଳେ ଦେଖିଲି ଯେ ସେଠାରେ କୀଲ ଗୋରୁମାନଙ୍କ ପାଇଁ ବାହାରେ କୌଣସି ଘର ନଥିବାରୁ ବର୍ଷା କାଳରେ ଗାଈଗୁଡ଼ିକ ବଡ଼ କଷ୍ଟ ଭୋଗ କରନ୍ତି । ଶୀତ, କାକର, ବର୍ଷା ପବନ ସହ୍ୟ କରି ରାତିସାରା ପଦାରେ ପଡ଼ି ରହନ୍ତି । ମୁଣ୍ଡ ଗୁଞ୍ଜିବାକୁ ଟିକିଏ ଜାଗା ନାହିଁ । ଝଡ଼, ଲଗାଣ ବର୍ଷା ଓ ତୋଫାନ ହେଲେ ଅନେକ ଗାଈ ବାଛୁରୀ ମରିପଡ଼ନ୍ତି । ସେହି ଆହା କରିବାକୁ ନଥାଏ ।

ଅନେକ ଗୃହସ୍ଥ ନିଜ ଘର ଗାଈକୁ ଯେତେବେଳେ ପଗୁରନ୍ତି ନାହିଁ କାହାର ବା ଗୋଠିଆ ଗାଈକୁ ପଗୁରୁଛି କିଏ ? ମନ୍ଦାର ଗ୍ରାମ ପଶ୍ଚିମ

ମୁଣ୍ଡ ଆମ୍ଭ ଭୋଟା ମଠରେ ମୁଁ ଗୋଟିଏ ଗୋଶାଳା ନିର୍ମାଣ କରିଦେଲି । ଗାଁ ଧୋବା ହରି ସେଠିକୁ ଏହି ଗୋଶାଳା ନିର୍ମାଣ କାର୍ଯ୍ୟରେ ନିଯୁକ୍ତ କରିଥିଲି । ଏଥି ଭିତରେ ଗାଈ ଓ ବାଛୁରୀ ପ୍ରାୟ ଏକଶହ ପର୍ଯ୍ୟନ୍ତ ରହିପାରି ଶୀତ, ପବନ, ବର୍ଷାରୁ ବଞ୍ଚିପାରି ପାରନ୍ତି । ଏହି ଗୃହ ନିର୍ମାଣରେ ମୋର ଦେଢ଼ ଶହ ଟଙ୍କା ଖରଚ ହୋଇଥିଲା । ପୁଣି ଆମ ଗାଁ ପଶ୍ଚିମ ପଟରେ ବୁଢ଼ି ସ୍ୱାଇଁ ଘର ଏକ ପୋଖରୀ ଥିଲା । ପିଲାଦିନେ ଆମ୍ଭେମାନେ ସେହି ପୋଖରୀରେ ଗାଧୋଇଥାନ୍ତୁ । ଏବେ ସେହି ପୋଖରୀଟା ଶୁଖି ଯାଇଅଛି । ତହିଁରେ ଟୋପେ ମାତ୍ର ଜଳସ୍ପର୍ଶ କରିବାକୁ ନଥାଏ । ସ୍ନାନ ପାନାଦି ସକାଶେ ଗ୍ରାମଲୋକେ ବହୁ ଅଭାବ ଅସୁବିଧା କଷ୍ଟ ଭୋଗ କରନ୍ତି । ମୁଁ ଦୁଇଶତ ଟଙ୍କା ଦେଇ ଏହି ପୋଖରୀଟା ଖୋଳାଇ ଦେଲି । ପୁଣି ଏକଶତ ଟଙ୍କା ଖରଚ କରି ପାହାଚ ପଥର ଅଣାଇ ଦେଲି । ଇତ୍ୟବସର ଡେପୁଟି କଲେକ୍ଟର ଦିନେ ଏହି ଗ୍ରାମକୁ ଆସିଥିଲେ । ସେହିକୁ ସେହି ପୋତା ପୋଖରୀ ଦେଖାଇ ଦିଆଗଲା ଓ ସରକାର ଏହାର ଜୀର୍ଣ୍ଣ ସଂସ୍କାର କରି ଦିଅନ୍ତୁ ବୋଲି ପ୍ରାର୍ଥନା କରାଗଲା । ଡେପୁଟି କହିଲେ ଯେ ଯଦି ଗ୍ରାମ ଲୋକ ଟ ୫୦୦ ଦିଅନ୍ତି ତେବେ ସରକାର ଟ ୫୦୦ ଦେବେ । ଟ ୧୦୦୦ ପୋଖରୀ ଖୋଳା ପାହାଚ ପକା ଇତ୍ୟାଦି ମରାମତି ହୋଇପାରିବ । ଡେପୁଟିଙ୍କ ଆଦେଶ କ୍ରମେ ଓକିଲ ହରିବାବୁ ଟ ୨୫୦ ଦେଲେ ଓ ମୁଁ ଦେଲି ଟ ୨୫୦ । ଏହିପରି ଟ ୧୦୦୦ ଖରଚ ହୋଇ ପୋଖରୀ ଖୋଳା ହେଲା । କିନ୍ତୁ ସରକାର ବାହାଦୁର ଅଙ୍ଗୀକୃତ ଟ ୫୦୦ ନ ଦେଇ ଏପର୍ଯ୍ୟନ୍ତ ରହିଅଛନ୍ତି ।

୧୯୧୨—୧୯୧୩ ଖ୍ରୀଷ୍ଟାବ୍ଦରେ ମୁଁ ବଡ଼ଖେମଣ୍ଡି ଠାରେ ଥିବାବେଳେ ବ୍ରହ୍ମପୁରଠାରେ 'ଆଶା'ର ଉତ୍ପତ୍ତି । ବେଲଗୁଣ୍ଠାରେ ପ୍ରତିଷ୍ଠିତ ଲକ୍ଷ୍ମୀ ନୃସିଂହ ଜୀବନ ବୀମା କମ୍ପାନୀ ଯେତେବେଳେ କ୍ଷତିଗ୍ରସ୍ତ ହୋଇ ଅସ୍ତ ହେବାକୁ ବସିଲା ଏବଂ ତତ୍ ସଂଲଗ୍ନ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନୀ କାର୍ଯ୍ୟାଳୟରେ ବିଶୃଙ୍ଖଳା ଘଟିଲା, ସେତେବେଳେ ଅର୍ଥାତ୍ ୧୯୧୦ ରେ କମ୍ପାନୀ ସେକ୍ରେଟାରୀ ଭାଗୀରଥି ଦାସେ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନୀର ଛାପାକଳ ଓ ତତ୍ସମ୍ବନ୍ଧ ସମସ୍ତ ଉପକରଣ କ୍ରୟକଲେ

ଆସିକା ନେଇଗଲେ । ସେଠାରେ ନାନାବିଧ ଛପାକାର୍ଯ୍ୟରୁ ଉତ୍ପନ୍ନଧନ ଖରଚ କରି ଆସନ ଜମାଇ ବସିଲେ । ଅଂଶୀଦାରମାନଙ୍କୁ ଯଥାରୀତି ହିସାବ ଦେଖାଇଲେ ନାହିଁ କିମ୍ବା ଲଭ୍ୟାଂଶ ଦେଲେ ନାହିଁ । ବହୁ ଅଂଶୀଦାର ଥିବାଯୋଗୁଁ ଏକେଲା କେହି କିଛି ହିଁ ଅଭିଯୋଗ କରିପାରୁ ନଥିଲେ । ବାସେ ଉକ୍ତ ଛପାକଳ ଓ ଅନ୍ୟାନ୍ୟ ସରଞ୍ଜାମ ଗୁଡ଼ିକୁ ନେଇ ଅସିକାଠାରେ ଋଣପଇସା ରୋଜଗାର କରି ବସିଲେ ।

ଏହି ସମୟରେ ଗୋରଡ଼ା ଲମ୍ବୋଦର ମହାପାତ୍ରଙ୍କ ପୁଅ ମହୁଲିଆ ରଥ ଘର ଦଉପୁର ଶଶିଭୂଷଣ ରଥେ ପାଟନା କଲେଜରେ ମାଟ୍ରିକ୍ୟୁଲେସନ କ୍ଲାସ ପର୍ଯ୍ୟନ୍ତ ପଢ଼ାଶୁଣା କରି, ମାନ୍ଦ୍ରାଜ, କଟକ କଲିକତା ବୋମ୍ବାଇ ଇତ୍ୟାଦି ନାନାସ୍ଥାନ ଭ୍ରମଣ କରି ଗଞ୍ଜାମରେ ଆସି ପହଞ୍ଚିଲେ । ହାତରୁ ପଣତରୁ ସବୁ ସାରି ଅକର୍ମଣ୍ୟ ହୋଇ ବସିଥିଲେ । ବ୍ରହ୍ମପୁରଠାରେ ଏକ ଛପାଖାନା ଓ ସମ୍ବାଦପତ୍ର ପରିଚାଳନା କରିବା ନିମନ୍ତେ ମୋ ନିକଟରେ ସାହାଯ୍ୟପ୍ରାର୍ଥୀ ହେଲେ । ସେତେବେଳେ ମୁଁ ଭଗୀରଥ ଦାସଙ୍କୁ କହିପୋଛି ଶଶିରଥଙ୍କୁ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନୀ ସମ୍ବନ୍ଧ ଗୋଟିଏ ଛାପାକଳ ଏବଂ ଆବଶ୍ୟକ ହେବା ଅନ୍ୟ କେତେକ ସରଞ୍ଜାମ ଦିଆଇଦେଲି । ରଥଙ୍କ ସହିତ ଏହି ଚୁକ୍ତି ହେଲା ଯେ ସେ ଛାପାଖାନାର ମାନେଜର ହୋଇ ରହିବେ ଏବଂ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନୀ ଅଂଶୀଦାରମାନଙ୍କୁ ହିସାବ ପତ୍ର ବୁଝାଇଦେଇ ସେମାନଙ୍କ ମଧ୍ୟରେ ଲଭ୍ୟାଂଶ ବଣ୍ଟନ କରି ଦେଉଥିବେ । ସୁରଙ୍ଗୀ, ବଡ଼ଖେମଣ୍ଡି ଓ ମଞ୍ଜୁଷା ରାଜାମାନଙ୍କଠାରୁ ଏହାଙ୍କୁ ଏକ ହଜାର ପର୍ଯ୍ୟନ୍ତ ଅର୍ଥ ସାହାଯ୍ୟ ଦିଆଇଦେଲି । ରଥେ 'ଆଶା' ନାମକ ସମ୍ବାଦପତ୍ର ପ୍ରକାଶ କଲେ ଏବଂ ମୁଁ ଉକ୍ତ ପତ୍ରର ସମ୍ପାଦକ ହେବି ବୋଲି ଲୋକରେ ପ୍ରଚାର କରି ଆପଣାର ପ୍ରତିଷ୍ଠା ବଢ଼ାଇଥିଲେ ।

ମୁଁ ଏହି ପତ୍ରକୁ ଅନେକ ଲେଖା ଲେଖି ସାହାଯ୍ୟ କରୁଥାଏ । ବର୍ଷେ ଦୁଇ ବର୍ଷ ପରେ ଦେଖାଗଲା ଯେ ରଥେ ହିସାବ ପତ୍ର ନ ଦେଖାଇ ଲଭ୍ୟାଂଶ କାହାକୁ କିଛି ନ ଦେଇ ସବୁ ଆତ୍ମସାତ କରି ବସିଲେ । ଦେଶ ମିତ୍ରଶାହି

ସାଧାରଣ ବିଷୟରେ ନୀରବ ରହି କେବଳ ବ୍ୟକ୍ତିଗତ ବିଦ୍ୱେଷ ପ୍ରଣୋଦିତ ହୋଇ ପକ୍ଷପାତ ଏବଂ ବ୍ୟକ୍ତିଗତ କୁତ୍ସାଗର୍ଭକ ପ୍ରବନ୍ଧାଦି ଲେଖି ନିଜର ସଂକୀର୍ଣ୍ଣ ସ୍ୱାର୍ଥସାଧନ କରିନେବାକୁ ବସିଲେ । ସେତେବେଳେ ମୁଁ ସମସ୍ତ ପ୍ରକୃତ ଘଟଣା ଏବଂ ରଥଙ୍କର ଦ୍ରୋହାଚରଣ ସମ୍ବାଦପତ୍ର ସାହାଯ୍ୟରେ ଲୋକରେ ପ୍ରକାଶ କରି ଦେଲି । ରଥେ ସେ ରଥେ ସେହି ଦିନଠାରୁ ମୋପ୍ରତି ଖଡ଼ଗହସ୍ତ ହେଲେ । ମୁଁ ଜଣେ ସରକାରୀ କର୍ମଚାରୀ ହୋଇ ମଧ୍ୟ ହାକିମ ହୋଇ ଦେଶ ମିତ୍ରବାଦ ରାଜନୈତିକ ଆନ୍ଦୋଳନରେ ହସ୍ତକ୍ଷେପ କରୁଅଛି ବୋଲି ବିଭାଗୀୟ କର୍ତ୍ତୃପକ୍ଷଙ୍କୁ ଜଣାଇ ଦେଲେ । କୈଫିୟତ ଦେବା ପରେ କର୍ତ୍ତୃପକ୍ଷଙ୍କ ବିଚାରରେ ନିଷ୍ପତ୍ତି ହେଲା ଯେ ମୁଁ ଆଉ ଗଞ୍ଜାମ ଜିଲ୍ଲାରେ କାର୍ଯ୍ୟ କରିପାରିବି ନାହିଁ । ଅନ୍ୟ ଜିଲ୍ଲାକୁ ମୋହର ସ୍ଥାନାନ୍ତର କରାଯିବ । ରଥ ମହାଶୟଙ୍କର ଏହି ଦ୍ରୋହାଚରଣ ଦେଖି ଗଞ୍ଜାମରୁ ଅନ୍ୟ ଏକ ଖବର କାଗଜ ବାହାର କରିବା ଚେଷ୍ଟା କରାଗଲା ।

ଭଗୀରଥ ଦାସେ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନୀର ସମସ୍ତ ସମ୍ପତ୍ତି ସେମିତି ଆସ୍କାଠାରେ ରଖି ଆପଣାର କାର୍ଯ୍ୟ ଚଳାଉଥିଲେ । ଧରାକୋଟରୁ କିଶୋର-ଚନ୍ଦ୍ର ନାମକ ଖଣ୍ଡିଏ ଛାପାକଳ କିଣିଆଣି, କିଶୋରଚନ୍ଦ୍ର ପ୍ରେସ ନାମରେ ପ୍ରିଣ୍ଟିଂ କମ୍ପାନୀର ଅବଶିଷ୍ଟ ଛାପାକଳ ଓ ସରଞ୍ଜାମ ଯୋଗ କାର୍ଯ୍ୟ କରୁଥିଲେ । ଏହି କିଶୋରଚନ୍ଦ୍ର ପ୍ରେସରୁ 'ପ୍ରଜାମିତ୍ର'ନାମକ ସାପ୍ତାହିକ ସମ୍ବାଦପତ୍ର ୧୯୧୭ —୧୯୧୮ ଖ୍ରୀଷ୍ଟାବ୍ଦରେ ଆସ୍କାରୁ ବାହାର କରାଗଲା । ମୁଁ ସେତେବେଳେ ଛୁଟିରେ ଥିଲି । ଭଗୀରଥ ଦାସଙ୍କ ସଙ୍ଗରେ ଯାଇ ସୁରଙ୍ଗୀ, ବଡ଼ଖେମଣ୍ଡି ଓ ବଡ଼ଗଡ଼ରୁ ପ୍ରାୟ ଆଠଶତ ଟଙ୍କା ପ୍ରଜାମିତ୍ରର ସାହାଯ୍ୟ ସକାଶେ ମଗାଇ ଦେଇଥିଲି । "ଆଶା"ର ଉଚ୍ଛେଦ କାମନାରେ ସୁରଙ୍ଗୀ ପାଞ୍ଚଶତ କରଜ ଦେଲେ, ବଡ଼ଖେମଣ୍ଡି ଦୁଇଶତ ଦାନ ଦେଲେ ଏବଂ ଆମ୍ଭମାନଙ୍କ ବିଦାୟ ସ୍ୱରୂପ ବଡ଼ଗଡ଼ ସେହି ଟ୧୦୦ ଦେଲେ ତାହା ସବୁ ପ୍ରଜାମିତ୍ରର ସାହାଯ୍ୟ ପାଇଁ ମୁଁ ଦେଇଥିଲି । "ଏହିପରି ଭାବରେ ଭଗୀରଥ ଦାସଙ୍କ ସତ୍ତ୍ୱାଧିକାର ଓ ତତ୍ତ୍ୱାବଧାନରେ ଆସ୍କା କିଶୋରଚନ୍ଦ୍ର ପ୍ରେସରୁ "ପ୍ରଜାମିତ୍ର" ପ୍ରକାଶିତ ହେଲା" ।

୧୯୧୭ ଖ୍ରୀଷ୍ଟାବ୍ଦରେ ମୁଁ ଦୀର୍ଘକାଳ ଛୁଟିରେ ଥିଲବେଳେ ମୋର ଛତ୍ରପୁର ସ୍ଥାନାନ୍ତର ହେଲା । ସେଠାରେ ପ୍ରାୟ ୬ ମାସ ରହିବାକୁ ପଡ଼ିଥିଲା । ଛତ୍ରପୁର ହେଉଛି ଗଞ୍ଜାମ ଜିଲାର ରାଜଧାନୀ । ଏଠାରେ ଜିଲା କଲେକ୍ଟର ଆଦି ଅନେକ ଜିଲା ଅଧିକାରୀମାନେ ନିବାସ କରନ୍ତି । ଓଡ଼ିଆମାନଙ୍କର ଅନଭିଜ୍ଞତାରୁ, ଏମାନଙ୍କ ମଧ୍ୟରେ ଜାତୀୟଭାବର ଅଭାବରୁ ପ୍ରଭୃତି ତେଲଗୁ କର୍ମଚାରୀମାନଙ୍କ ପକ୍ଷପାତ ବଳରେ ଓ ଅନ୍ୟାୟରେ ହେନ୍ତୁ, ସ୍କୁଲ ଅଫିସ ଇତ୍ୟାଦିରେ ଓଡ଼ିଆ ଭାଷାର ଯଥେଷ୍ଟ ନ୍ୟାଯ୍ୟ ବ୍ୟବହାର ହୁଏ ନାହିଁ । ଓଡ଼ିଆ ଆସାମୀମାନେ ତେଲଗୁ ଭାଷାରେ ତେଲଗୁ ଲୋକଙ୍କ ଦ୍ୱାରା ଲେଖାଇ ନେଉଥିଲେ । ଓଡ଼ିଆ ଭାଷାପ୍ରତି ଏହି ଅନ୍ୟାୟ ଅତ୍ୟାଚାର ମୋହର ସହ୍ୟ ହେଲା ନାହିଁ । ଓଡ଼ିଆମାନଙ୍କୁ ଆପଣାର ଦସ୍ତାବିଜପତ୍ର କେବଳ ଓଡ଼ିଆରେ ଲେଖାଇ ଆଣିବାକୁ ବାଧ୍ୟ କଲି । ଏଥିପାଇଁ କେତେ ତେଲଗୁ ଲୋକ ଆପଣାର ଅଧିଆ ଲାଭରେ ବ୍ୟାଘାତ ଲାଗିବା ଦେଖି ମୋହର ବିରୋଧରେ ଉଚ୍ଚଗାମୀ କର୍ତ୍ତୃପକ୍ଷଙ୍କ ନିକଟକୁ ନାନାପ୍ରକାର ମିଥ୍ୟା ଅଭିଯୋଗ କରି ଲେଖିପଠାଇଲେ । ବହୁକାଳ ଦୀନବନ୍ଧୁ ପଣ୍ଡା ଗୋତ୍ର-କୁଳପତି ସ୍ୱରୂପ ସେହି ଜାତୀୟ ଦଳରେ ଯୋଗ ଦେଲେ । ସ୍ଥାନୀୟ ଓକିଲ ଅଗ୍ନିହୋତ୍ରୀ ସୀତାରାମୟ୍ୟାଙ୍କ ପ୍ରଭୃତି ସେହି ଦଳର ଅଧିନେତା ହୋଇ ବାହାରିଲେ । କର୍ତ୍ତୃପକ୍ଷ ମୋଠାରୁ କୈଫିୟତ ନେଲେ, କିନ୍ତୁ ମୋର କିଛି କରିପାରି ନଥିଲେ । ଅସୁସ୍ଥତା ବଶତଃ ମୁଁ ଫେରେ ସେଠାରୁ ଛୁଟି ନେଇ ଗଲି । ଶାରୀରିକ ଅସୁସ୍ଥତା ଏବଂ ସରକାରୀ କାର୍ଯ୍ୟରେ ଅନିଚ୍ଛା ହେତୁ ମୁଁ ଦେଢ଼ବର୍ଷ ପର୍ଯ୍ୟନ୍ତ ଛୁଟି ନେଇ ରହିଲି ।

ପାର୍ବତୀପୁରଠାରେ ଅବସ୍ଥିତି କରୁଥିବା ବେଳେ ସଙ୍ଗ ଦୋଷରୁ ଗଙ୍ଗାପ୍ରସାଦ ନାମରେ ଭାଙ୍ଗ ବା ପାଚକ ପାଣି ମୁଁ ଅଭ୍ୟାସ କରିପକାଇ ଥିଲି । ଏହି ଭାଙ୍ଗ ମୋହର ଶରୀର ପକ୍ଷରେ ଅନେକ ସମୟରେ ଉପକାର ହୋଇଥାଏ । କିନ୍ତୁ ପରିଣାମରେ ଏଥିରୁ ଆମ ଜନିତ କୋଷ୍ଠବଦ୍ଧ, ଅର୍ଶ ମଳଦ୍ୱାରଶୂଳ, ମୁଣ୍ଡ ବ୍ୟଥା, ପେଟବ୍ୟଥା ଇତ୍ୟାଦି ଉପଦ୍ରବ ଜାତ ହେଲା । ଅନେକ ପ୍ରକାର ଔଷଧ ସେବନ କରି ବାରମ୍ବାର ଅନଭିଜ୍ଞ ବୈଦ୍ୟଙ୍କର ସ୍ପୃହା ଅନୁସରଣ କରିବାକୁ

ପଡ଼ିଲି । ଖୁନ୍ ନାମକ ଜର୍ମାନ ଦେଶ ପଣ୍ଡିତଙ୍କ ସ୍ୱଭାବ ସୁଲଭ ଚିକିତ୍ସା ପ୍ରଣାଳୀ କଥା ଶୁଣି ଉତ୍ତରୋତ୍ତର ଆକୃଷ୍ଟ ହୋଇ ୧୯୧୭ ସାଲରେ ଆସିବାରେ ଏହି ଚିକିତ୍ସା ଆରମ୍ଭ କଲି । ଏହା ଏକ ପ୍ରକାର ବ୍ରହ୍ମଚର୍ଯ୍ୟ ନିୟମ । ଏଥିରେ ଭୋଗବିଳାସ ଓ ଜିହ୍ୱାଲାଳସା ଛାଡ଼ିବାକୁ ହୁଏ । ପ୍ରତି ଲଙ୍କାମରିଚ ମସଲା ଇତ୍ୟାଦି ପରିତ୍ୟାଗ କରିବାକୁ ହୁଏ । କଞ୍ଚା ହେଉ ବା ସିଝା ହେଉ ବିଶେଷ ଭାବରେ ଫଳମୂଳ ଖାଇବାକୁ ହୁଏ, ପ୍ରତି ରୋଗ ନିବାରଣ ଓ ସ୍ୱାସ୍ଥ୍ୟସାଧନ ସକାଶେ ଜଳବାୟୁ ଓ ଆଲୋକ ବିଶେଷ ପ୍ରୟୋଗ କରିବାକୁ ହୁଏ । ଉପସ୍ଥର ଅଗ୍ରଭାଗରେ ଏବଂ ନାଭିର ନିମ୍ନ ପ୍ରଦେଶରେ ଶୀତଳ ଜଳ ପ୍ରୟୋଗ କରିବାକୁ ହୁଏ । ଶୀତଳ ଜଳ ଓ ବାଷ୍ପସ୍ନାନ ପ୍ରବଳ ଯଥେଷ୍ଟ ଭାବରେ ବ୍ୟାୟାମ ଓ ମୁକ୍ତ ବାୟୁ ସେବନ କରିବାକୁ ହୁଏ । ଏହାହିଁ ଏହି ଖୁନ ଚିକିତ୍ସାର ମୂଳ ଏବଂ ସ୍ଥୂଳ ନିୟମ । ଏହି ନିୟମ ପାଳନ କରିବାରୁ ମୋହର ଶରୀରର ଅତିରିକ୍ତ ସ୍ଥୂଳତା କମିଗଲା । କ୍ରମେ ଏପରି ଶୀର୍ଣ୍ଣହୋଇ ଆସିଲି ଯେ ମୋତେ ଅନେକ ଲୋକ ଚିହ୍ନି ପାରିଲେ ନାହିଁ ଓ ଅନେକ ଲୋକ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କିନ୍ତୁ କୃଶକାୟ ହେଲେ ସୁଦ୍ଧା ବଳ ଊଣା ନ ଥିଲା ଏବଂ ସ୍ୱାସ୍ଥ୍ୟ ଭଲ ଥିଲା । ଏହି ଚିକିତ୍ସା ଅବଲମ୍ବନର ଦୁଇବର୍ଷ ପରେ କୌଣସି ଅଭାବରୁ ଜ୍ୱର ହୋଇଗଲା ; ଯଥାବିହିତ ନିୟମ ପାଳନ କରି ପାରିଲି ନାହିଁ ପ୍ରତି ଅତିରିକ୍ତ ପରିମାଣରେ ହାଡ଼ ବା ତମ୍ବାକୁ ପ୍ରୟୋଗ କରିଦେଲି । କେତେଦିନ ଜ୍ଞାନ ଶୂନ୍ୟ ହୋଇ ପଡ଼ିଲି । ସେତେବେଳେ ବୈଦ୍ୟମାନେ ଉତ୍କଟ ଔଷଧ ଖୁଆଇ ଦେଲେ । ପୀଡ଼ା ଦିନକୁ ଦିନ ବଢ଼ିଲା । ପାଖ ଦୁଇମାସ କାଳ ଶଯ୍ୟାଗତ ହୋଇ ପଡ଼ିଲି । କ୍ରମେ କ୍ରମେ ଆରୋଗ୍ୟ ଲାଭ କଲି ଏବଂ ଖୁନ୍ ନିୟମ ମଧ୍ୟ ଛାଡ଼ି ଆୟୁର୍ବେଦ ଔଷଧ ବ୍ୟବହାର କଲି ।

୧୯୨୦ ଜାନୁଆରୀ ମାସରେ ଆମ୍ଭେମାନେ ରାମେଶ୍ୱର ତୀର୍ଥ ଯାତ୍ରାରେ ବାହାରିଲୁ । ଆମ ସ୍ତ୍ରୀ, ପୁତ୍ରାଣୀ ନାରାୟଣ, ସମ୍ବନ୍ଧୀ ମଲମଣି ସାବନ୍ତ ଏବଂ ତାହାଙ୍କ ସ୍ତ୍ରୀ ପ୍ରତି ବେଣୀପଲ୍ଲୀ ଚନ୍ଦ୍ରନାଥ ପାଲ ଏବଂ ତାହାଙ୍କର ବିଧବା ଝିଅ ଓ ଦୁଇଭଣଜା, ଏହିପରି ନଅଜଣ ହୋଇ ତୀର୍ଥ ଯାତ୍ରା କଲୁ । ହିମାଚଳ, ଗୋଦାବରୀ, କୃଷ୍ଣା, ଚିଦାମ୍ବର, ଶ୍ରୀରଙ୍ଗ, ରାମେଶ୍ୱର, ଧନୁତୀର୍ଥ ଇତ୍ୟାଦି

ବୁଲି ଦେଖି ଏକମାସ ପରେ ବ୍ରହ୍ମପୁର ଫେରିଲୁ । ସେତେବେଳସୁଦ୍ଧା ମୋହର ଛୁଟି ଶେଷ ହୋଇଥିଲା । ଡାକ୍ତର ଦ୍ୱାରା ପରୀକ୍ଷା କରାଇବାକୁ ହେଲା । ଶରୀରର ତତ୍ତ୍ୱ ସମ୍ବନ୍ଧରେ ଡାକ୍ତର ଯାହା କହିଲେ, ତାହାହିଁ ଶେଷ ସିଦ୍ଧାନ୍ତ । ବ୍ରହ୍ମା ବଳବଳେଇଲେ ବେଦ ହୁଏ ବୋଲି ଯେଉଁ କଥା ଅଛି, ଡାକ୍ତର ସାହେବ ମୋହର ଅନୁରୋଧ କ୍ରମେ ମତେ ପେନ୍‌ସନ ସାର୍ଟିଫିକେଟ ଦେଇ ଦେଲେ । ୧୯୨୦ ଫେବୃଆରି ଶେଷଠାରୁ ସରକାରୀ କାର୍ଯ୍ୟରୁ ଶେଷ ବିଦାୟ ବା ଅବସର ଗ୍ରହଣ କରିବାକୁ ହେଲା । ଏହି ଦିନାବଧି ମନ୍ଦାର, ଛତ୍ରପୁର ଓ ରସୁଲକୁଣ୍ଡାରେ ରହି ବିଷୟ ଜଞ୍ଜାଳରେ ପଡ଼ି ପ୍ରାୟ ସମୟ କାଟିବାକୁ ହେଲା । ପ୍ରାୟ ୫୦ ବର୍ଷ ହେଲା, ମୁଁ ଏ ପର୍ଯ୍ୟନ୍ତ ଭୁବନେଶ୍ୱର, ଖଡ଼ଗା ଓ ଶାରଣକୁଳ ଯାଇ ପାରି ନଥିଲି । ଏହି ଅବସରରେ ଖଡ଼ଗା, ଶାରଣକୁଳ ଯାଇ ରଘୁନାଥ ଓ ଲଡୁବାବାଙ୍କ ଦର୍ଶନ କଲି । ପୁରୀ ଭୁବନେଶ୍ୱର ଓ ପୁରୀରେ ୧୦।୧୫ ଦିନ ରହି ସେଠାରେ ସ୍ୱାସ୍ଥ୍ୟ ଅନୁକୂଳ ଜଳବାୟୁ ଓ ସାଗର ସମୀରଣ ସେବନ କରି ଫେରିଲି ।

୧୯୨୦ ଅଗଷ୍ଟ ମାସରେ ରସୁଲକୁଣ୍ଡାଠାରେ ଉତ୍କଳ ପ୍ରେସ ନାମକ ଏକ ଛାପାଖାନା ସ୍ଥାପନର ବ୍ୟବସ୍ଥା କରାଗଲା । ବେଲଗୁଣ୍ଠା ଗ୍ରାମବାସୀ ଆନନ୍ଦ ସାହୁଙ୍କ ମନ୍ତ୍ରଣାରେ ଏହି ପ୍ରସ୍ତାବ ଗୃହୀତ ହେଲା । ୫୦୦ ମୂଲ୍ୟର ଏକ ଏକ ଅଂଶ ସଂଗ୍ରହ କରି ବହୁଲୋକଙ୍କ ସମବେତ ଚେଷ୍ଟାରେ ଏହି ଛାପାଖାନା ବ୍ୟବସାୟ ଚଳାଇବା ସ୍ଥିର ହେଲା । ଘରଦ୍ୱାର, ପ୍ରସ୍ତର, ବିଜ୍ଞାପନ ଏବଂ ଉପକରଣ ସଂଗ୍ରହ ଇତ୍ୟାଦିରେ ନିଜ ହାତରୁ ଅନେକ ଟଙ୍କା ଖରଚ କରାଗଲା । ଛମାସ ପର୍ଯ୍ୟନ୍ତ ଗଲିଲି । ଅଂଶ ମୂଲ୍ୟରୂପେ ପ୍ରାୟ ଦେଢ଼ ଶତ ମାତ୍ର ଟଙ୍କା ସଂଗୃହୀତ ହେଲା । ଏହି ସମବେତ ଉଦ୍ୟମରେ ଲୋକଙ୍କର ସହଯୋଗିତା ଓ ଉତ୍ସାହ ନ ଦେଖି ଉକ୍ତ ସଂଯୋଗ ପରିତ୍ୟାଗ କରାଗଲା । ଅଂଶୀଦାରମାନେ ଦେଇଥିବା ଅଂଶ ମୂଲ୍ୟ ସେମାନଙ୍କୁ ଫେରାଇ ଦିଆଗଲା । ବେଲଗୁଣ୍ଠା କାଦେନ-ବୀମା କମ୍ପାନୀ ବହୁତ ଲୋକଙ୍କୁ ଦଗା ଦେଇଥିବାରୁ ଲୋକଙ୍କର କମ୍ପାନୀ ବ୍ୟବସାୟରେ ଆଉ ବିଶ୍ୱାସ ହୁଏ ନାହିଁ । ତାପରେ ସ୍ୱଦେଶୀ ନାମରେ ନିଜର ଏକ ଛାପାଖାନା ରଖିବାକୁ ହେଲା । ଆସିକା ଭଗୀରଥି ଦାସଙ୍କଠାରୁ

ଗଞ୍ଜାମ ପ୍ରିଣ୍ଟିଂ କମ୍ପାନୀ ସମ୍ବନ୍ଧ ଏକ ପ୍ରେସ ଛାପା କଳ ପୂର୍ଣ୍ଣ ତେଲେଗୁ ଓଡ଼ିଆ ଅକ୍ଷର ପ୍ରଭୃତି ଉପକରଣ ୪୦୦୦୯ ଦେଇ କିଣିବାକୁ ହେଲା । ଗଞ୍ଜାମର ତେଲୁଗୁ ଓଡ଼ିଆ ବିବାଦ ବିଷୟବାଦ ଯେନି ଲେଖାଲେଖି ଚାଲିପାରେ ଏବଂ ଜିଲାରେ ଅଶାନ୍ତି ଘଟିପାରେ, ଏହି ଆଶଙ୍କା କରି କଲେକ୍ଟର ସାହେବ ବିନା ଜାମିନରେ ଛାପାଖାନା ଚଳାଇବାକୁ ପ୍ରଥମେ ଅନୁମତି ଦେଲେ ନାହିଁ । ପରେ ତାଙ୍କୁ ନାନାପ୍ରକାର ବୁଝାଇ ସୁଝାଇ ବିନା ଜାମିନରେ ଅନୁମତି ପାଇବାକୁ ହେଲା । କେତେଦିନ ପରେ ସ୍ୱଦେଶୀନାମକ ସାପ୍ତାହିକ ପତ୍ର ପ୍ରକାଶ କରିବାକୁ ଗଲାବେଳେ ଅସହଯୋଗ ଆନ୍ଦୋଳନରେ ମୋହର ସମ୍ପର୍କ ଅଛି ବୋଲି ଦିଆଯାଇଥିବା ଆଦେଶ ଫେରାଇ ନେଲେ । ରସଲକୁଣ୍ଡାଠାରେ ସ୍ୱଦେଶୀ ଛାପାକଳ ଧୀରେ ଧୀରେ ଚାଲିଛି । ଆନନ୍ଦ ସାହୁ ଏହି ଛାପାଖାନାର ଚାଳକ ନିଯୁକ୍ତ ଅଛନ୍ତି ।

## ଅସହଯୋଗ ଆନ୍ଦୋଳନ—

ଇଂରେଜମାନେ ପ୍ରାୟ ଦେଢ଼ ଶହ ବର୍ଷ ରାଜତ୍ୱ କଲେଣି, ତଥାପି ଦିନକୁ ଦିନ ଅଧିକ ପ୍ରଜା ଶୋଷଣ ହେଲା । ଜନସାଧାରଣ ଦିନକୁଦିନ ଅଧିକ ଦରିଦ୍ର, ଅବିଦ୍ୟା ଏବଂ ଅପାରଗ ହେଲେ । ସ୍ୱାୟତ୍ତଶାସନ ପାଇବା କୌଣସି ଆଶା ଦେଖାଗଲା ନାହିଁ । ଗୋରାମାନେ କଳା ଲୋକଙ୍କୁ ପଶୁ ଜ୍ଞାନ କଲେ, ତାଙ୍କ ପ୍ରତି ଅବିଶ୍ୱାସ ଏବଂ ଦ୍ରୋହାଚରଣ କଲେ । ପରିଶେଷରେ ଦେଶବାସୀଙ୍କ ମାନ ମହତ, ଇଜ୍ଜତ ନଷ୍ଟ ହେଲା ଏବଂ ନିରୀହ ଲୋକମାନେ ବିରାଡ଼ି କୁକୁର ପରି ସ୍ଥାନେ ସ୍ଥାନେ ମରି ପଡ଼ିଲେ । ମୁସଲମାନ ଖଲିଫା ପ୍ରତି ଦ୍ରୋହାଚରଣ ଏବଂ ପଞ୍ଜାବ ଅତ୍ୟାଚାର ଅସହ୍ୟ ହେଲା । ସେତେବେଳେ ମହାତ୍ମା ଗାନ୍ଧି ସତ୍ୟାଗ୍ରହ କରି ସରକାର ସହିତ ସମସ୍ତ ସମ୍ପର୍କ ତୁଟାଇ ଅସହଯୋଗ ବିଧି ପ୍ରସ୍ତାବ କଲେ । ୧୯୨୦ ସାଲରେ ଏଥି ସକାଶେ କଲିକତାଠାରେ କଂଗ୍ରେସର ବିଶେଷ ଅଧିବେଶନ ବସିଲା । ଏଥିରେ କେହି କେହି ଦେଶ ନେତାମାନେ ଗାନ୍ଧିଙ୍କ ସହିତ ଏକମତ ହୋଇ ପାରିନଥିଲେ । କିନ୍ତୁ ଡିସେମ୍ବର ମାସରେ ନାଗପୁରଠାରେ ଯେଉଁ କଂଗ୍ରେସ ସଭା ହେଲା ତହିଁରେ ଭାରତର ପ୍ରାୟ ସମସ୍ତ ମୁଖ୍ୟ ନେତାମାନେ ମହାତ୍ମା ଗାନ୍ଧିଙ୍କ ସହିତ ଏକମତ ହେଲେ ଏହି ପନ୍ଥାରେ ଭାରତର ସ୍ୱରାଜ ପାଇବା ନିର୍ଦ୍ଧାରଣ କରାଗଲା । ନିରୁପଦ୍ରବ, ଅହିଂସା, ଶାନ୍ତିମୟ

ଅସହଯୋଗ ଦ୍ୱାରା ସ୍ୱରାଜ ଲାଭ କରିବା ସ୍ଥିର ହେଲା । ଭାରତୀୟମାନଙ୍କର ଏହି ଆନ୍ଦୋଳନ ଦମନ କରିବା ପାଇଁ ଇଂରେଜୀ ସରକାର ରୁଦ୍ର ମୂର୍ତ୍ତି ଧାରଣ କରି ଅସହଯୋଗୀମାନଙ୍କୁ ବନ୍ଧ ଦଣ୍ଡ ଦେଲେ । ଚିତ୍ତରଞ୍ଜନ, ମୋତିଲାଲ, ଲଜପତରାୟ ଇତ୍ୟାଦି ନେତାମାନଙ୍କୁ ବନ୍ଦୀ କଲେ । ୧୯୨୧ ଡିସେମ୍ବର ଅହମଦାବାଦ କଂଗ୍ରେସରେ ପୁନରପି ସେହି ନିରୁପଦ୍ରବ ଅସହଯୋଗ ନୀତି ପାଳନ ନିର୍ଦ୍ଧାରିତ ହେଲା । ୧୯୨୨ ମାର୍ଚ୍ଚ ୧୮ ତାରିଖରେ ମହାତ୍ମା ଗାନ୍ଧିଙ୍କୁ ମଧ୍ୟ ସରକାର ବନ୍ଦୀ କଲେ । ତଥାପି ଏହି ଅସହଯୋଗ ଆନ୍ଦୋଳନ ଚାଲିଲା ।

ଅସହଯୋଗ ଆନ୍ଦୋଳନରେ ସବିଶେଷ ବୃତ୍ତାନ୍ତ ଏଠାରେ ଲେଖାଯାଇ ନାହିଁ । ସଂକ୍ଷେପରେ (୧) ବିଦେଶୀ ସୂତା ଓ ଲୁଗା ପରିତ୍ୟାଗ କରି ଭାରତ-ବାସିମାନେ ନିଜେ ଚରଖାରେ ସୂତା କାଟି ଖଦି କରି ପିନ୍ଧିବେ । (୨) ସରକାରୀ କୋର୍ଟ କଚେରୀ ସମ୍ପର୍କ ତ୍ୟାଗକରି ଗ୍ରାମ୍ୟପଞ୍ଚାୟତଦ୍ୱାରା ଆପଣାର ବିବାଦ ନିଷ୍ପତ୍ତି କରିବେ । (୩) ସରକାରୀ ସ୍କୁଲ ପାଠ ଛାଡ଼ି ଜାତୀୟ ବିଦ୍ୟାଳୟ ସ୍ଥାପନ କରି ତହିଁରେ ଦେଶୀୟ ଭାଷାରେ ଜାତୀୟ ଶିକ୍ଷା ଦେବେ । (୪) ସବୁ ଭେଦ ଓ ହିଂସା ଛାଡ଼ି ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ଜୈନ, ପାରସି ସମସ୍ତ ପରସ୍ପର ଭେଦ ଓ ସଦାନୁଭୂତି ସହ ଏକ ହେବେ ଏବଂ ଭାରତର ସ୍ୱାଧୀନତା ପାଇଁ, ପ୍ରାଣପଣେ ଚେଷ୍ଟା କରିବେ । କେତେକ ଭାରତୀୟ ନରମପନ୍ଥୀ ନାମରେ ପୃଥକ୍ ରହି ସରକାର ପକ୍ଷରେ ରହିଛନ୍ତି । ଏମାନେ ରାଜନୈତିକ ବୃଦ୍ଧି ହେବ ଭ୍ରାନ୍ତ ଧାରଣାର ବଶୀଭୂତ ହୋଇ ଅଥବା ସଂକୀର୍ଣ୍ଣ ସ୍ୱାର୍ଥ ସାଧନ ଉଦ୍ଦେଶ୍ୟରେ ଦେଶର ଏହି ପବିତ୍ର ଆନ୍ଦୋଳନରେ ଯୋଗ ନ ଦେଇ ଅତ୍ୟାଚାରୀ ସରକାର ପକ୍ଷ ଗ୍ରହଣ କରିଛନ୍ତି । ଯାହା ହେଉ ପରିଣାମରେ ସତ୍ୟର ଜୟ ହେବ ଏବଂ ପାପର କ୍ଷୟ ହେବ । (୧୯୨୦)

ଆଜକୁ ପ୍ରାୟ ୩୫ । ୩୬ ବର୍ଷ ହେଲା ଭାରତୀୟ ଜାତୀୟ କଂଗ୍ରେସ ସଭା ବସୁଅଛି । ତହିଁରେ କେବଳ ଦେଶର ମୁଖ୍ୟ ମୁଖ୍ୟ ଲୋକମାନେ କାଗଜ କଲମରେ ନୀତି ନିର୍ଦ୍ଧାରଣ ଏବଂ ସରକାରଙ୍କଠାରେ ନିବେଦନ କାକୁସ୍ତି,

ବନସ୍ତ ଇତ୍ୟାଦ କରନ୍ତି । ତହିଁରେ ସରକାର କର୍ଣ୍ଣପାତ କରନ୍ତି ନାହିଁ । ଆଜି କଂଗ୍ରେସ ସଭାର ସେ ଭୀତ ନାହିଁ । ଶତ୍ରୁର ପଛେଯାଉ କର୍ମ ସାଧିବାକୁ ହେବ । ଆଜି ଜନସାଧାରଣ ଏହି କଂଗ୍ରେସ ଆନ୍ଦୋଳନରେ ଯୋଗ ଦେଇ-ଛନ୍ତି । ପ୍ରତ୍ୟେକ ପ୍ରଦେଶରେ କଂଗ୍ରେସର ଶାଖା ବସିଅଛି । ପୁଣି ପ୍ରାଦେଶିକ କଂଗ୍ରେସ ତରଫରୁ ପ୍ରତ୍ୟେକ ଜିଲ୍ଲାରେ ଜିଲ୍ଲା କଂଗ୍ରେସ ସଂସ୍ଥାପିତ ହୋଇଅଛି । କଂଗ୍ରେସ କାର୍ଯ୍ୟ ଚଳାଇବା ସକାଶେ ଦେଶରେ କୋଟିଏ ଉପରେ ଟଙ୍କା ଛମାସ ମଧ୍ୟରେ ସଂଗୃହୀତ ହୋଇଅଛି ଏବଂ କୋଟିଏ ଲୋକ କଂଗ୍ରେସ ସଭାର ସଭ୍ୟ ହୋଇଅଛନ୍ତି । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଦେଶବନ୍ଧୁ ଗୋପବନ୍ଧୁ ଦାସ । ଆଜି ଏହି ସଭାପତି ମହୋଦୟ ଦେଶ ପାଇଁ ନିଜେ କାରାଦଣ୍ଡ ଭୋଗ କରୁଛନ୍ତି । ଅନେକ କଂଗ୍ରେସ କର୍ମୀମାନେ ବନ୍ଦୀ ହୋଇ ଅସହ୍ୟ ଯନ୍ତ୍ରଣା ଭୋଗ କରୁଛନ୍ତି । ଆଜିକାଲି କଂଗ୍ରେସ ମେମ୍ବର ହେବା, ସ୍ୱରାଜ୍ୟ ପାଣ୍ଠିରେ ଚାନ୍ଦା ଦେବା, ଲୋକଙ୍କୁ ସେମାନଙ୍କ ଧର୍ମ କର୍ମ ଓ ଅଧିକାର ବୁଝାଇ କହିବା ପୁଣି ସୂତା କାଟି ଦେଶୀ ଖଦି ପିନ୍ଧିବା ସରକାରଙ୍କ ଦୃଷ୍ଟିରେ ମହାନ ଅପରାଧ ହୋଇଅଛି, ଏଥିପାଇଁ ଲୋକେ ଜେଲ ପାଉଛନ୍ତି ।

# ସ୍ୱରାଜ୍ୟ

(ଏହା ଭିକ୍ଷା ମାଗୁଛି ହରି ବୃତ୍ତିରେ)

ଶୁଣ ଆମ୍ଭ ଗୁହାରି ହରି
କୃପା କରି ଦିଅ ସ୍ୱରାଜ୍ୟ ଭିକ୍ଷା,
ଯାଅନ୍ତୁ ଦୂରି ଦରିଆ ପାରି
ବିଦେଶୀ ବେପାରୀ ସବୁ ଆମ୍ଭରି । (ପଦ)

ସବୁ କୁଳିଆ ପାଠ ପଢି
ଲୋକେ ହେଲେ ସ୍ୱଧର୍ମ ଛାଡ଼ି,

କଲେ ନୌକରି,                    କି ବାବୁଗିରି
ଇଂରାଜୀ ସଙ୍ଗରେ ନ ଧେଲେ ସରି ।୧।

ଭାଇମାନେ ହେଲେ ଭଗାରି
କଲେ ସଉଖୀନ ଗୃକରୀ,
ଦେଶ ଅବସ୍ଥା                    ନ କଲେ ଚିନ୍ତା
ଆମେ ଘରେ ଆମେ ହେଲୁ ଭିକାରୀ ।୨।

ଧନ ଲୋଭେ ଦେଶୀ ବେପାରୀ
ବିକନ୍ତି ମଦ ଠିକା କରି,
ଅଫିମ ମଦ                    ଅତି ଉନ୍ମାଦ
ଦେଲା ଆମ୍ଭ ସବୁ ସମ୍ପଦଂସାର ।୩।

ଭାରତ ଦେଶ ନରନାରୀ
ଗ୍ରାମ ପଞ୍ଚାୟତ ନ କରି,
ହାତରୁ ସାରି                    ମାମଲା କରି
କୋର୍ଟରେ କରନ୍ତି ଡ଼ିଗିରି ଜାରି ।୪।

ପୂର୍ବର ବସ୍ତ୍ର କାରିଗର
ଆଜି ହେଲା କି ହତଶିରୀ,
ଦେଶର ତନ୍ତୀ                    ନବୁଣି ଖଦ୍ଦି
ପରକୁଳି କରି ପାଏ ମଜୁରି ।୫।

୧୯୨୧-୨୨ ଅସହଯୋଗ ଆନ୍ଦୋଳନ ସମୟରେ ଲିଖିତ —

ଶ୍ରୀବତ୍ସ ପଣ୍ଡା

ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି କଟକର, ମୁଁ ଜଣେ ମେମ୍ବର । ବାର୍ଷିକ ଚାନ୍ଦା ଟ ୫ ଦେବାକୁ ହୁଏ । ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକ । ଏ ମହାଶୟ ଏମ୍. ଏ. ଶ୍ରେଣୀ ପାଠ ଛାଡ଼ିଦେଇ ବହୁକ୍ଷତି ସହ୍ୟ କରି, ବହୁ ପରିଶ୍ରମକରି ଦେଶ କାର୍ଯ୍ୟରେ ଲାଗିଛନ୍ତି । ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ମୁଁ ସଭାପତି । ମୋହର ଏଥିରେ ନାମ ମାତ୍ର ସାର, ଅସୁସ୍ଥତା ଯୋଗୁଁ ମୁଁ ସାକ୍ଷାତ ଭାବରେ କିଛି କାର୍ଯ୍ୟ କରିପାରେ ନାହିଁ । ଅସୁସ୍ଥତା ଯୋଗୁ ୧୯୨୧ ଶେଷ ଭାଗରେ ମୁଁ ସଭାପତି ପଦ ଛାଡ଼ିଥିଲି । ୧୯୨୨ରେ ପୁନରପି ମନୋନୀତ ହୋଇ କିଛି କାଳ ସଭାପତି ଥିଲି । ୧୯୨୨ ଶେଷରେ ଅସୁସ୍ଥତା ହେତୁ ସଭାପତି ପଦ ତ୍ୟାଗ କରିଅଛି । ତଥାପି ପାଖ ପାଖ ଗ୍ରାମ ଗ୍ରାମ ବୁଲି ୨୦।୨୫ ଖଣ୍ଡ ଗ୍ରାମରେ ପଞ୍ଚାୟତ ସ୍ଥାପନ କଲି । କିନ୍ତୁ ଦୁଃଖର ବିଷୟ ଲୋକମାନେ ଆତ୍ମନିର୍ଭରଶୀଳ ନୁହନ୍ତି । ସ୍ୱାର୍ଥପର ଏବଂ ଅତ୍ୟନ୍ତ ଭୟାଳୁ ହୋଇ ପଡ଼ିଛନ୍ତି । ପଞ୍ଚାୟତ ଚଳାଇ ପାରୁ ନାହାନ୍ତି । ଯାହାହେଉ ସ୍ୱଦେଶୀ ପ୍ରତି କ୍ରମେ କ୍ରମେ ଲୋକଙ୍କର ଆଗ୍ରହ ବଢ଼ୁଅଛି । ଲୋକେ ଶହେ ବର୍ଷ ହେଲା ଯାହା ଗ୍ରହିଛନ୍ତି ତାହା ବର୍ଷକରେ ଧରିନେବା ସହଜସାଧ୍ୟ ନୁହେ । ଅତଏବ ନିରାଶର କୌଣସି କାରଣ ନାହିଁ । ସ୍ୱରାଜ୍ୟ ପାଣ୍ଠିରେ ଧନ ସଂଗ୍ରହ ଲାଗିଛି ଏବଂ ଉକ୍ତ ଧନ କପା, ଅରଟ, ସୂତା, ଖଦି ଇତ୍ୟାଦି ଦେଶୀୟ ଅନୁଷ୍ଠାନରେ ଖର୍ଚ୍ଚ ହେଉଅଛି ।

୧୯୨୧ ସାଲ ପାଇଁ ସ୍ୱରାଜ୍ୟ ପାଣ୍ଠିରେ ମୁଁ ଦେଇଥିଲି ଏକଶତ ଟଙ୍କା । ୧୯୨୨ ରେ ଟ ୩୦୧ ମାତ୍ର ଦେଇଥିଲି । ୧୯୨୨ ମାର୍ଚ୍ଚ ତା ୧୮ ଶନିବାରେ ମହାତ୍ମା ଗାନ୍ଧୀ ବନ୍ଦୀ ହେଲେ । ସେହିଦିନ ତାହାଙ୍କ କାରାଦଣ୍ଡ ହେବାର ଉପଲକ୍ଷେ ପ୍ରତିମାସ ତା ୧୮ ରିଖ ଦୈନିକ ଆଦାୟ ଟ ୫୧ ସ୍ୱରାଜ୍ୟ ପାଣ୍ଠିରେ କେତେ ମାସ ପର୍ଯ୍ୟନ୍ତ ମୋହର ଦିଆଯାଇଅଛି ।

•

ପ୍ରାୟ ଦଶ ବର୍ଷ ପୂର୍ବେ ପୁରୀଠାରେ ଏକ ବିଧବାଶ୍ରମ ସ୍ଥାପନ କରାଯିବା ପାଇଁ ମୁଁ ପ୍ରସ୍ତାବ କରିଥିଲି । ଉକ୍ତ ଆଶ୍ରମ ସହାୟେ ମୋହର ବାପା ମାତାଙ୍କ ଦୁଇଗୋଟି ନିଜ ଅଟ୍ଟାଳିକା ବାବଦ ପାଞ୍ଚହଜାର ଟଙ୍କା ମୁଁ ଦେବାକୁ କହିଥିଲି ।

ମୟୂରଭଞ୍ଜ ମହାରାଜା ମଧ୍ୟ ଟ୧୫୦୦ ଦେବାକୁ ସ୍ୱୀକାର କରିଥିଲେ । ଉକ୍ତ ପ୍ରସ୍ତାବିତ ଆଶ୍ରମ ଏପର୍ଯ୍ୟନ୍ତ ସ୍ଥାପିତ ହୋଇ ପାରିଲା ନାହିଁ । ଉକ୍ତ ଦସ୍ତାବିଜରୁ ମୁଁ ପାଇଲି ଟ୩୦୦୲ । ଉକ୍ତ ତିନିଶତଟଙ୍କା ଆସିକାଠାରେ ସଂସ୍ଥାପିତ ସଂସ୍କୃତ ବିଦ୍ୟାଳୟ ପାଇଁ ଦେଇଥିଲି । ବର୍ତ୍ତମାନ ୧୯୨୨ କୋଏମ୍ବତୁଠାରୁ ପ୍ରସିଦ୍ଧ ଗୌଡ଼-ବାଡ଼ ସାହି, ପଣ୍ଡିତ ବଳଭଦ୍ର ମିଶ୍ରେ ଗୋଟିଏ ବିଧବାଶ୍ରମ ଖୋଲିବା ଚେଷ୍ଟା କରିବାରୁ, ମୁଁ ଉକ୍ତ ଆଶ୍ରମ ସକାଶେ ମାସିକ ଟ ୧୦୲ ହିସାବରେ ୩।୪ ମାସ ଦେଇଅଛି । ଆର୍ଯ୍ୟ ସମାଜକୁ ଲେଖା ଯାଇଥିଲା ଯେ, ସେ ଯଦି ଏହି ଆଶ୍ରମ ଭାର ଗ୍ରହଣ କରିବେ, ତେବେ ମୁଁ ମୋର ବାର୍ଷିକ ଛ ଶତ ଟଙ୍କା ଅଦାୟ ଆସିବା ଜମି ଖଣ୍ଡେ ଆର୍ଯ୍ୟସମାଜ ନାମରେ ଦେବାକୁ ଉଇଲନାମା ଲେଖିଦେବି ।

## ପୁରୀରେ ଘର କରିବା କଥା

ଭାରତ ମହାଦେଶରେ ପୁରୀ ଏକ ପବିତ୍ର ଧାମ । ଉତ୍କଳ ମହାରାଜାଙ୍କର ଉତ୍କଳ ଜାତିର ଏହା ଏକ ମହାନ୍ କୀର୍ତ୍ତି । ଏଠାରେ ଖଣ୍ଡେ ଘର ରଖି ଶେଷକାଳ କଟାଇବା ମୋର ଇଚ୍ଛା ଥାଏ । ଏତେ କାଳ ପରେ ଆମ୍ଭର ନେତଗାଁ (ନେଟଙ୍ଗା) ଜମି ଟ୨୦୦୦୲କୁ ବିକ୍ରି କରି, ଇଙ୍ଗ ନାଠୀ ସାବଜ ଘରୁ ଟ୨୦୦୦ ଋଣ କରି, ବାକି ଟ୨୦୦୦୲ ଏଣୁ ତେଣୁ ସଂଗ୍ରହ କରି ଛ ହଜାର ଟଙ୍କା ଧରି ଆମ୍ଭର ଛାପାଖାନା ଚାଳକ ଆନନ୍ଦ ସାହୁଙ୍କୁ ସଙ୍ଗେ ନେଇ ପୁରୀ ଗଲି ବାଲି ସାହିରେ ୧୯୨୨ ଅକ୍ଟୋବର ତା ୨୪ ରିଖରେ ଚିନ୍ତାମଣି ପଣ୍ଡାଙ୍କ ଘର କିଣିବାକୁ ହେଲି । ଉତ୍କଳୀୟ ମାନଙ୍କର ଭାରତ ପ୍ରସିଦ୍ଧ କୀର୍ତ୍ତି ଏହି ପବିତ୍ର ଧାମରେ ବଙ୍ଗାଳି, ମାରୁଆଡ଼ି ଇତ୍ୟାଦି ନାନା ଶ୍ରେଣୀର ଲୋକେ ଘରକରି ରହୁଛନ୍ତି । ବାସିନ୍ଦା ଓଡ଼ିଆମାନେ ସହର ଭିତର ଘଞ୍ଚ ସଂକୀର୍ଣ୍ଣ ରୁଦ୍ଧ ଜାଗାରେ ପଡ଼ିଛନ୍ତି । ବଙ୍ଗାଳିମାନେ ଆସି ସୁବିଶାଳ ପ୍ରଶସ୍ତ ସମୁଦ୍ର ବାଲି, ସାଗର କୂଳ ସବୁ ଆକ୍ରମଣ କରି ଯାଉଛନ୍ତି । ଓଡ଼ିଆମାନଙ୍କର ଉତ୍ସାହ ସାହସ ବୁଦ୍ଧି ବିକ୍ରମ ପୁରୁଷାର୍ଥ ଆଦି

ଅଛୁ ଦେଖା ଯାଉନାହିଁ । ଓଡ଼ିଆମାନେ ଆଜ ଉତ୍ସାହହୀନ, ଦରିଦ୍ର । ଉତ୍କଳୀ ରାଜା ଜମିଦାର ଓ ଧନୀ ଲୋକମାନେ ସମୁଦ୍ର କୂଳରେ ଆପଣାର ସ୍ୱର୍ଗ ଦ୍ୱାରରେ କାହିଁକି ବା ଘର କରିବେ ?

• ମୋର ସାହିତ୍ୟ ଚର୍ଚ୍ଚା ବିଷୟରେ ଦୁଇ ଚାରି କଥା କହୁ ରଖେ । ଛାତ୍ର ଥିବା ଦିନୁ ଖବର କାଗଜରେ ମୁଁ ଲେଖା ଲେଖି କରୁଥାଏ । ସେଥିପାଇଁ ସାହିତ୍ୟ ସମାଜରେ ମୋର କିଛିଏ ପରିଚୟ ଥାଏ । ମୁଁ ପାର୍ବତୀପୁର ସବ୍‌ରେଜିଷ୍ଟ୍ରାର ଥିଲାବେଳେ ସେଠା ଲୋକଙ୍କର ନୀତି ବିଷୟ ଯେଉଁ ଉତ୍କଳ ସାହିତ୍ୟ ମାସିକ ପତ୍ରରେ ପାର୍ବତୀପୁର ଶୀର୍ଷକ ଦୁଇ ତିନିଗୋଟି ପ୍ରବନ୍ଧ ଲେଖିଥିଲି । ମୋର ସେହି ପ୍ରବନ୍ଧ ପାଠକରି କବିବର ରାଧାନାଥ ପ୍ରୀତ ହୋଇ ମୋର ପ୍ରଶଂସା କରିଥିଲେ ଏବଂ ଜାତୀୟ ଜୀବନ ବିଷୟରେ ଗୋଟିଏ ପ୍ରବନ୍ଧ ଲେଖିବା ପାଇଁ ମତେ ବିଶେଷ ଅନୁରୋଧ କରିଥିଲେ ।

•

କବିବରଙ୍କ ସହିତ ମୋର ପ୍ରଥମ ସାକ୍ଷାତ ଉତ୍କଳ ସମ୍ମିଳନୀ ବେଳେ କଟକଠାରେ ଘଟିଥିଲା । ସେତେବେଳେ ମୋର ନାମ ଶୁଣିବା ମାତ୍ରେ କହିଥିଲେ ଯେ, ସେ ମୋତେ ପୂର୍ବରୁ ଭଲକରି ଜାଣନ୍ତି ମୋର ପାର୍ବତୀପୁର ପ୍ରବନ୍ଧରୁ ସେ ମୋର ପରିଚୟ ପାଇଥିଲେ । ବଡ଼ଖେମଣ୍ଡି ଦିଗପୁଣ୍ଡିଠାରେ ମୁଁ ସବ୍‌ରେଜିଷ୍ଟ୍ରାର ଥିଲାବେଳେ ସେଠାକୁ ଥରେ ଭକ୍ତକବି ମଧୁସୂଦନ ରାଓ ଯାଇଥିଲେ ଏବଂ ମୋତେ ଦେଖି, ମୁଁ ଉତ୍କଳର ବିଦ୍ୟାସାଗର ବୋଲି ସେ ମୋତେ କହିଥିଲେ । ପୂର୍ବେ ବିଧବା ବିବାହ ଯେନି ମୁଁ ସମାଜରେ କିଛି ଆନ୍ଦୋଳନ କରିଥିଲି ଏବଂ ପାର୍ବତୀପୁରଠାରେ ଏକ ବିଧବାର ବିବାହ କରାଇ ଦେଇଥିଲି

ସମ୍ବଲପୁରଠାରେ ଉତ୍କଳ ସମ୍ମିଳନୀର ଏକାଦଶ ଅଧିବେଶନ ବେଳେ ଉତ୍କଳର ବ୍ୟାସକବି ଫକୀରମୋହନ ସେନାପତି ମୋତେ ଦେଖି କହିଥିଲେ, ''ଆପଣଙ୍କର ସବୁ ଲେଖା ମୁଁ ମନଯୋଗ କରି ପଢ଼େ । ଆପଣଙ୍କ ଅନେକ-

ଲୋକ ଗାଳି ଦେଇଥାନ୍ତି । ବୁଝିବେ ଯେ ଆପଣଙ୍କ ଲେଖାରେ କିଛି ସାରକଥା ଥିବାରୁ ଲୋକେ ପଢନ୍ତି ଏବଂ ଗାଳିଦିଅନ୍ତି । ସାରକଥା ନଥିଲେ କେହି ଗାଳି ଦିଅନ୍ତେ ନାହିଁ ।" ପରେ ପୁରୀ ମୁକ୍ତି ମଣ୍ଡପର ଦୋଷ ଗୁଣ ମାହାତ୍ମ୍ୟ ସମାଲୋଚନା କରି ଲେଖିଥିଲି । ମୋର ସେ ଲେଖା ଦେଖି ସେଠାକାର କେହି କେହି ପଣ୍ଡିତମାନେ ପଣ୍ଡାଙ୍କୁ ଧରିତ୍ରୀ ଉପରି ଧରିଛି ବୋଲି ମୋ ପ୍ରତି କଟୁ କଟାକ୍ଷ କରିଥିଲେ । କବିଶ୍ରେଷ୍ଠ ଗଙ୍ଗାଧର ମେହେର ପରେ ମତେ କହିଥିଲେ, "ଶ୍ରୀବତ୍ସ ବାବୁ, ଆପଣଙ୍କ ଲେଖାର ମୁଁ ବିଶେଷତ୍ୱ ଉପଲବ୍ଧି କରିଅଛି । ତହିଁରେ ନିର୍ଭୀକ ସତ୍ୟବାଦିତା ସ୍ପଷ୍ଟ ଦେଖାଯାଏ । ତଦ୍ୱାରା ବହୁ ଲୋକଙ୍କର ବହୁ ଉପକାର ଘଟିଥାଏ" ।

## ସ୍ତ୍ରୀ ଶିକ୍ଷା

ନାରୀ ଜାତିର ଦୁରବସ୍ଥା ଭାରତର ଅବନତିର ଏକମୂଳ କାରଣ । ମୁଁ ବୁଦ୍ଧି ଜାଣିବା ଦିନରୁ ସ୍ତ୍ରୀମାନଙ୍କୁ ଶିକ୍ଷା ଓ ସ୍ୱାଧୀନତା ଦେବା ମୋର ଏକାନ୍ତ ଇଚ୍ଛା । ମୁଁ ଯେତେବେଳେ ଯେଉଁ ସ୍ଥାନରେ ଥାଏ, ମୋର କ୍ଷୁଦ୍ର ଶକ୍ତିରେ ଯେତେବେଳେ ଯେଉଁ ସ୍ଥାନରେ ଥାଏ, ମୋର କ୍ଷୁଦ୍ର ଶକ୍ତିରେ ଯେତେଦୂର ପାରେ, ସେହି ସ୍ଥାନରେ ସ୍ତ୍ରୀ ଶିକ୍ଷାର ପ୍ରଚାର ଏବଂ ବାଳିକା ବିଦ୍ୟାଳୟ ସ୍ଥାପନ ଚେଷ୍ଟା କରିଥାଏ । କେତେ ବାଧାବିଘ୍ନ ସହ୍ୟକରି ପୁରୁଷୋତ୍ତମପୁର, ଦିଗପହଣ୍ଡି ଗଡ, ଆସିକା ଓ ବେଲଗୁଣ୍ଠାରେ ବାଳିକା ପାଠଶାଳାରେ ଯଥାସାଧ୍ୟ ଧନମନ ବ୍ୟୟ କରିଥିଲି । ଏହିପାଠଶାଳା ଗୁଡ଼ିକ କ୍ରମୋନ୍ନତି ଲାଭକରି ଅଛି । କେତେଗୋଟି ପାଠଶାଳା ଆଜି ସରକାରଙ୍କ ଦ୍ୱାରା ପରିଚାଳିତ ହେଉଅଛି । ୧୯୨୨ ମାର୍ଗଶୀର ମାସଠାରୁ ନିଜଗ୍ରାମ ମନ୍ଦାର ଠାରେ ଗୋଟିଏ ବାଳିକା ପାଠଶାଳା ସ୍ଥାପନ କରି ମାସିକ ୫୮୯ ବେତନରେ ରଣପୁର ନିବାସୀ ବାସୁଦେବ ମିଶ୍ର ନାମକ ଜଣେ ସଚ୍ଚରିତ୍ର ବର୍ଷୀୟାନ ଶିକ୍ଷକଙ୍କୁ ନିଯୁକ୍ତ କରିପାରିଅଛି । ଏହି ପାଠଶାଳରେ ଓଡ଼ିଆ, ବ୍ରାହ୍ମଣ, କେଉଟ, ଧୋବା, ବାଉରି, ଦଣ୍ଡାସୀ ଇତ୍ୟାଦି ନାନା ଜାତିର ୨୦—୨୫ ଜଣ

ଏକତ୍ର ମିଳାମିଶି ପଢାଶୁଣା କରନ୍ତି । ଏହି ପାଠଶାଳା ସ୍ଥାପନ ଏବଂ ପରିଚାଳନାରେ ଗ୍ରାମର ଭଦ୍ରଲୋକ ଓ ପ୍ରଧାନମାନେ କେହି କାହୁଁ ଅର୍ଥ ସାହାଯ୍ୟ କରନ୍ତି ନାହିଁ । କିନ୍ତୁ ଅନେକ ଲୋକ ସ୍ତ୍ରୀ ଶିକ୍ଷା ପ୍ରତି ଖଡ଼ଗହସ୍ତ ପୁଣି ଅଚ୍ଛୁତ ଜାତିର ପିଲାଙ୍କୁ ଶିକ୍ଷା ଦେବାକୁ କେହି ରାଜି ନୁହନ୍ତି । ଗ୍ରାମ ଦେବୀ ବଡ ରାଉଳ ଠାକୁରାଣୀ ମନ୍ଦିର ବେଢା ଭିତରେ ଏକ ଗୃହରେ ପୁଣି ମାଳଗୁ ଗ୍ରୁମୁଡ଼ିଆ ତଳେ ପିଲାମାନେ ପଢାଶୁଣା କରନ୍ତି । ମନ୍ଦିର ବେଢା ଭିତରେ ଅଚ୍ଛୁତ ଜାତିର ପିଲାମାନେ ପ୍ରବେଶ କରି ପାରିବେ ନାହିଁ ବୋଲି ଲୋକଙ୍କର ତୀବ୍ର ଆପତ୍ତି । ଗ୍ରାମଦେବୀ ଠାକୁରାଣୀ ମନ୍ଦିର ଭିତରେ ପ୍ରାଣ, ବାଉରୀ ଜାତିର ଛେଳି, ମେଣ୍ଢା, କୁକୁଡା ଇତ୍ୟାଦି ପଶୁହତ୍ୟା କରି ରକ୍ତ ମାଂସ ଓ ମଦରେ ଠାକୁରାଣୀଙ୍କ ପୂଜା ସେବା କରନ୍ତି, ଏଥିରେ ଗ୍ରାମ ଲୋକଙ୍କର କିଛି ଆପତ୍ତି ନ ଥାଏ ।

ଆମ୍ଭମାନଙ୍କ ମଧ୍ୟରେ ଯେପରି ଜାତିଭେଦ ଦେବ ଦେବୀଙ୍କ ମଧ୍ୟରେ ସେହିପରି ଜାତିଭେଦ । ବିଷ୍ଣୁ ଶ୍ରେଣୀର ଦେବତା ଜଗନ୍ନାଥ, ଗୋପୀନାଥ ଇତ୍ୟାଦି ବ୍ରାହ୍ମଣ ଜାତୀୟ, ଯେହେତୁ ବ୍ରାହ୍ମଣମାନେ କେବଳ ଏମାନଙ୍କୁ ପୂଜାସେବା କରନ୍ତି । ଶିବ, ମହାଦେବ ଶୂଦ୍ର ଜାତୀୟ, ଯେହେତୁ ମାଳୀ ଓ ରାଉଳ ନାମକ ଏକ ଶୂଦ୍ର ଜାତି ଶିବ ମନ୍ଦିରରେ ପୂଜାସେବା କରନ୍ତି । ପୁଣି ଗ୍ରାମଦେବୀ, ଠାକୁରାଣୀଙ୍କ ହାଡ଼ି ପାଣ ଆଦି ଅଛୁତ ଜାତିର ଲୋକେ ମଦ କୁକୁଡା ନେଇ ପୂଜା କରନ୍ତି । ଏହି ହିସାବରେ ଠାକୁରାଣୀ ଅସ୍ପୃଶ୍ୟା । ତେବେ ଠାକୁରାଣୀ ମନ୍ଦିରରେ ନିମ୍ନ ଜାତିର ପିଲାମାନେ ପ୍ରବେଶ କଲେ କ୍ଷତି କଣ ? ଯେ ଚେଇଁ ଶୁଏ ତାକୁ ଉଠାଇବ କିଏ । ଯେ ବୁଝି ବୁଝେ ନାହିଁ କିମ୍ବା ଯେ ନିଦାମୂର୍ଖ ତାକୁ ବୁଝାଇବ କିଏ ? ବ୍ରହ୍ମା ମଧ୍ୟ ପରାସ୍ତ ହେବେ । ଯାହାହେଉ ଲୋକମାନଙ୍କରେ ଉକ୍ତ ଆକ୍ଷେପ ପ୍ରତି ଭ୍ରୂକ୍ଷେପ ନକରି ପାଠଶାଳାଟି ଏକରକମ୍ ପ୍ରାୟ ଦୁଇବର୍ଷ ଚ଼ଳିଲା । ଶିକ୍ଷକ ଛୁଟିରେ ଯାଇ ବହୁକାଳ ପର୍ଯ୍ୟନ୍ତ ଆଉ ଫେରି ନ ଆସିବାରୁ, ଅନ୍ୟ ଉପଯୁକ୍ତ ଶିକ୍ଷକ ଅଭାବରୁ ପାଠଶାଳାଟି ଭାଙ୍ଗି ଗଲା ।

# ଅସ୍ପୃଶ୍ୟତା

ମହାତ୍ମା ଗାନ୍ଧିଙ୍କ ପ୍ରସ୍ତାବାନୁସାରେ ହିନ୍ଦୁ ସମାଜରୁ ଅସ୍ପୃଶ୍ୟତା ଦୂର କରିବା ଭାରତୀୟ ସ୍ୱରାଜ୍ୟପ୍ରାପ୍ତିର ଏକ ମୂଳ ସାଧନ ବୋଲି ଜାତୀୟ କଂଗ୍ରେସ ସଭା ଧାର୍ଯ୍ୟ କରିଛନ୍ତି । କଂଗ୍ରେସ ସଭାର ଏହି ନିର୍ଦ୍ଧାରଣ ହେବା ବହୁକାଳ ପୂର୍ବରୁ ହିନ୍ଦୁ ଜାତିର ଅସ୍ପୃଶ୍ୟତା ତଥା ଜନ୍ମଗତ ଜାତିଭେଦ, ସରକାର ଶାସନ ପ୍ରଣାଳୀ ଏବଂ କୋର୍ଟ କଚେରି ମାମଲା ମକଦ୍ଦମାରେ ମୋର ମନ ମାନେନାହିଁ । ତାପରେ ମହାତ୍ମାଙ୍କ ଆଦର୍ଶ ଉପଦେଶ ଗ୍ରହଣ କରି ଅସ୍ପୃଶ୍ୟତା ଦୂରୀକରଣରେ ଅଗ୍ରସର ହେବାଲାଗି ଅନେକ ସମୟରେ ମୋତେ ସାମାଜିକ ଯାତନା ଭୋଗ କରିବାକୁ ପଡ଼ିଥିଲା । ଦିନେ ଆମର ଦଣ୍ଡାସୀରେ ଏକ ଭୋଜି ହେଉଥିଲା । ମୁଁ ସେତେବେଳେ ସେମାନଙ୍କ ଭୋଜି ଘରକୁ ଯାଇ ସେମାନଙ୍କ ମଧ୍ୟରେ ବସି, ସେମାନଙ୍କୁ ଛୁଇଁ ମଦ୍ୟପାନ ଓ ଗୋମାଂସ ଭକ୍ଷଣ ଛାଡ଼ିବା ପାଇଁ ସେମାନଙ୍କୁ ଉପଦେଶ ଦେଇଥିଲି ।

ସେମାନେ ମୋର ଉପଦେଶ ଗ୍ରହଣ କରି ସେଦିନ ମଦ୍ୟ ଫିଙ୍ଗିଦେଇ ଗୋମାଂସ ପୋତି ପକାଇଥିଲେ । ମୁଁ ଦଣ୍ଡାସୀ ଘରକୁ ଯାଇ ଦଣ୍ଡାସୀମାନଙ୍କୁ ଛୁଇଁଲି ବୋଲି ଆମ ଭାଇମାନେ ମୋତେ ଜାତି ବାରଣ କରିବାକୁ ବସିଲେ ଏବଂ ଅନ୍ୟଲୋକଙ୍କୁ ପ୍ରଭୃତି ବନ୍ଧୁବାନ୍ଧବମାନଙ୍କୁ ଆମ୍ଭ ଘରକୁ ଆସିବାକୁ ନିଷେଧ କଲେ; କିନ୍ତୁ ଏ ନିଷେଧ ରହିପାରିଲା ନାହିଁ । କିଛିଦିନ ପରେ ସାମାଜିକ ଗଠନୀତ ସବୁ ପୂର୍ବପରି ଚଳିଲା । ହାଡ଼ି, ପାଣ, ଦଣ୍ଡାସୀ ଆଦି ଅସ୍ପୃଶ୍ୟ ଜାତିର ଲୋକମାନଙ୍କୁ ମୁଁ କହେ, "ଯଦି ତୁମ୍ଭେମାନେ ମଦ୍ୟପାନ ପ୍ରଭୃତି ଗୋମାଂସ ଭକ୍ଷଣ କରିବ ନାହିଁ, ତେବେ ତୁମ୍ଭେମାନେ ଆଉ ଅଛୁଆଁ ହୋଇ ରହିବ ନାହିଁ" । ତଥାପି ଚିରକାଳ ଅଭ୍ୟାସ ଏବଂ ବାସନାରୁ ଏହି କଥାରେ ସେମାନଙ୍କର ମହତ ବିଶ୍ୱାସ ହୋଇ ପାରେ ନାହିଁ । ଆମ୍ଭେମାନଙ୍କୁ ଛୁଇଁ ଦେଲେ ପାପ ହେବ ବୋଲି ସେମାନଙ୍କର ଏକ ଧାରଣା । ଦିନେ ଜଣେ ହାଡ଼ି ଲୋକ ଆମ୍ବ ବିକି ଆଣିଥିଲା । ମୁଁ ତାହା ହାତରୁ ଆମ୍ବଟା ନେବାକୁ କେତେ ଚେଷ୍ଟା କଲି; ତଥାପି ସେ କୌଣସି ଧରାଛୁଆଁ ଦେଲା ନାହିଁ । ମୁଁ ତା ପାଖକୁ ଗଲେ ସେ ଆଉ

ଖଣ୍ଡେ ଦୂର ରହିଯାଏ । ସେମାନଙ୍କର ଆତ୍ମ ସମ୍ମାନ ଜ୍ଞାନ ଜାତ ନହେବା ପର୍ଯ୍ୟନ୍ତ ପ୍ରବୃତ୍ତି ଆମ୍ଭମାନଙ୍କର ସେମାନଙ୍କ ପ୍ରତି ଦ୍ୱେଷଜ୍ଞାନ ଦୂର ନହେବା ପର୍ଯ୍ୟନ୍ତ ଅସ୍ପୃଶ୍ୟତା ସମାଜରୁ ଯିବନାହିଁ । ଅତଏବ ସେମାନଙ୍କୁ ଶିକ୍ଷା ଏବଂ ସତ୍‌ସଙ୍ଗ ଯୋଗାଇ ଦେବା ଆବଶ୍ୟକ ।

ସ୍ୱଧର୍ମ ବା ମାନବ ଧର୍ମରକ୍ଷା ସକାଶେ ଅସ୍ପୃଶ୍ୟତା ନିବାରଣ ଯେପରି ଆବଶ୍ୟକ, ଆର୍ଥିକ ସ୍ୱାଧୀନତା ଏବଂ ସ୍ୱରାଜ୍ୟ ପ୍ରାପ୍ତି ସାଧନ ସକାଶେ ଅରଟରେ ସୂତାକାଟି ତନ୍ତରେ ଖଦଡ଼ବୁଣି ପିନ୍ଧିବା ସେହିପରି ଏକାନ୍ତ ଆବଶ୍ୟକ । ଅସହ-ଯୋଗ ଆନ୍ଦୋଳନ ବୃଦ୍ଧି ତହିଁରେ ଯୋଗଦେବା ଦିନୁ ଶ୍ରେଷ୍ଠ ହେଉ ବା ମୋଟ ହେଉ ସ୍ୱଦେଶୀ ଖଦଡ଼ ପିନ୍ଧିବା ହିଁ ମୋହର ବ୍ରତ ଏବଂ ଦୃଢ଼ ପ୍ରତିଜ୍ଞା । ମୁଁ ଚାରିଗୋଟି ଅରଟ, ଦୁଇଟା କପାଖାଇ ତିଆର କରାଇଲି । ବିନା ମୂଲ୍ୟରେ ଲୋକଙ୍କୁ ଅରଟ ଦେଲେହେଁ ଅନେକ ଲୋକଙ୍କର ତତ୍‌ପ୍ରତି ଆଗ୍ରହ ଦେଖାଯାଉ ନଥିଲା । କୁଟି ଖାଇବା ଏବଂ କାଟି ପିନ୍ଧିବା ପ୍ରତି ଲୋକଙ୍କ ଆସ୍ଥା ନାହିଁ । ଲୋକେ ସ୍ୱାଧୀନଭାବରେ ଦୁଃଖ କଷ୍ଟ ସହ୍ୟ କରିବାକୁ ବିମୁଖ କିନ୍ତୁ ପରାଧୀନତାରେ ବିଳାସୀ ହେବାକୁ ଚାହାନ୍ତି । ଆମ୍ଭଘର ପୂଜାରୀ, ଚାକର ସୂତା କାଟନ୍ତି । ଭଣଜା ଗୋପାଳ ମଧ୍ୟ ସୂତା କାଟେ । ମୁଁ ନିଜେ ଟିକେ ଟିକେ ସୂତା କାଟୁଥାଏ । କିନ୍ତୁ ସାଧୁ ପଣ୍ଡିତ ଲୋକେ ଉପଦେଶ ବା ଆଦର୍ଶ ଗ୍ରହଣ କରନ୍ତି ନାହିଁ । ଭଣଜା ମଧ୍ୟ ପରକଥା ଶୁଣି ସୂତାକଟା ଛାଡ଼ି ବସିଲା ପୁଣି ମୋଟା ଖଦଡ଼ ପିନ୍ଧିବାକୁ ରାଜି ହେଲା ନାହିଁ ।

**ପୋଷ୍ୟ ପୁତ୍ର**—ମୋର ପୁତ୍ର ସନ୍ତାନ ନଥିଲେ । ପୋଷ୍ୟ ପୁତ୍ର କରିବା ମୋହର ଇଚ୍ଛା ନଥାଏ । ପିଣ୍ଡପ୍ରାପ୍ତି ଏବଂ ବଂଶ ରକ୍ଷା କରିବା ପାଇଁ ପୋଷ୍ୟପୁତ୍ର କରିବାକୁ ହେବବୋଲି ମତେ ଅନେକେ ଅନୁରୋଧ କରନ୍ତି । କିନ୍ତୁ ପୋଷ୍ୟପୁତ୍ରର ଆବଶ୍ୟକତା ମୁଁ ଦେଖେନାହିଁ । ଭଣ୍ଡ ପିଣ୍ଡରେ ମୋର ବିଶ୍ୱାସ ନଥାଏ । ସମାଜରେ ସୁନାମ ରକ୍ଷା କରିବା ସକାଶେ ଅନ୍ୟ ଅନେକ ପ୍ରକାର ମାର୍ଗ ଅଛି । ସତ୍ ପାତ୍ରରେ ଦେଲେ,

ନଙ୍କ ଉପକାର କଲେ, ବିଦ୍ୟା ଶିକ୍ଷା ଦେଲେ, ପୁସ୍ତକ ଲେଖି ପ୍ରକାଶ କଲେ ପୁତ୍ର ଅପେକ୍ଷା ଶତଗୁଣ ଅଧିକ ସୁନାମ ରକ୍ଷା କରାଯାଇ ପାରେ । ଅବିଭାଜ୍ୟ ସମ୍ପତ୍ତିର ପରିଚାଳନା ଓ ସୁରକ୍ଷା ସକାଶେ ଉତ୍ତରାଧିକାରୀ ଆବଶ୍ୟକ । ସୁତରାଂ କ୍ଷତ୍ରିୟ ରାଜାମାନଙ୍କର ପୋଷ୍ୟ ପୁତ୍ର କରିବା ବାଞ୍ଛନୀୟ ହୋଇପାରେ । କିନ୍ତୁ ଗରିବ ବ୍ରାହ୍ମଣ ଯାହାର ତପସ୍ୟା ବା କଷ୍ଟ ସହନହିଁ ସମ୍ପତ୍ତି, ତାହା ପକ୍ଷରେ ପୋଷ୍ୟପୁତ୍ର ଗ୍ରହଣ ବିଡ଼ମ୍ବନା ମାତ୍ର; ଏହାହିଁ ମୋର ଧାରଣା ଥିଲା । ଆମଘରେ ରହି ଗୃହର ସକଳ କାର୍ଯ୍ୟକରି ଆମ ଅନ୍ତେ ଆମର ଥିବା ଘର ଓ ବିଲ, ଜମି, ବାଡ଼ି ଭୋଗ କରିବା ନିମନ୍ତେ ଭଣଜା ଗୋପାଳ(ପାଣ୍ଡିଆ ଗ୍ରାମ ନିବାସୀ ରାମଚନ୍ଦ୍ର ପାଢ଼ୀଙ୍କ ପୁତ୍ର) କୁ ଆଣି ମୋ ପାଖରେ ରଖିଲି । କିନ୍ତୁ ସେ ମୋର ଶିକ୍ଷା ଓ ଆଦର୍ଶ ଗ୍ରହଣ ନକରି ଭୋଗ-ବିଳାସରେ ମାତିଲା । ପ୍ରାୟ ଦୁଇବର୍ଷ ଆମ ଘରେ ରହିଲା । ଗୋସେବା, ସୂତାକଟା ବଗିଚାରେ କୃଷିକାମ ଇତ୍ୟାଦି ପରିଶ୍ରମ କରିବାକୁ ବିମୁଖ ହୋଇ ୧୯୨୩ ଜୁନ ତା ୨୫ ରିଖରେ ନିଜଗ୍ରାମ ପାଣ୍ଡିଆ ବାହାରି ଗଲା । ହରିବନ୍ଧୁ ନାମକ ଆଉ ଏକ ଭଣଜାକୁ ମାସିକ ୧୦।୧୫ ବ୍ୟୟ କରି ଦଶବର୍ଷ ପର୍ଯ୍ୟନ୍ତ ଇଂରାଜୀ ଶିକ୍ଷା ଦିଆଇଲି । ସେ ମଧ୍ୟ ମୋର ନିବାରଣ ନ ମାନି ବିଦ୍ୟାଶିକ୍ଷା ଶେଷ ନହେଉଣୁ ୨୦।୨୨ ବର୍ଷରେ ବିବାହ କଲା । ବିବାହ ହେବାରୁ ମୁଁ ଆଉ ତାହାର ବିଦ୍ୟାଶିକ୍ଷା ବ୍ୟୟଭାର ଗ୍ରହଣ କଲିନାହିଁ । ସେ ସମୟକୁ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ସ୍କୁଲ ଶିକ୍ଷା ତ୍ୟାଗ କରିବାକୁ ହେଲା । ତାପରେ ସେ ମୋ କଥା ନମାନି ସରକାରୀ ଚାକିରି ଅନ୍ୱେଷଣରେ ବୁଲିଲା ଏବଂ କିଛିକାଳ କୌଣସି ସ୍କୁଲରେ ଶିକ୍ଷକତା କରି ବିବାହର ଦ୍ୱିତୀୟ ବର୍ଷ ମରିଗଲା । ଭଗବାନଙ୍କ ଇଚ୍ଛା ଓ ନିୟମ କିଏ ଲଙ୍ଘିପାରେ ? ଆଜିକାଲି ବାଳକ ବାଳିକାମାନେ ବିଦ୍ୟାଶିକ୍ଷା

କମ୍ପା ଖେଳାବୁଲ ଗୁଡ଼ ପିଲାଙ୍କୁ କାମିନୀ କାଞ୍ଚନ ପ୍ରଲୋଭନରେ ପଡ଼ି ପଥଭ୍ରଷ୍ଟ ହୁଅନ୍ତି, ଭବୀ ଜୀବନ କଳଙ୍କିତ କରନ୍ତି । 'ଶ୍ରେଷ୍ଠ ହେଉ ବା ମୋଟ ହେଉ ସ୍ୱଦେଶୀ ଖଦି ପିନ୍ଧ ଗାନ୍ଧିଙ୍କୁ ନକଳ ଦାସତାଳ ଦଅ, ପୁଣି ବଗିଚାରେ କାମ କର, ଏହି କଥା କହିବାରୁ ଆମ ଭଣଜାମାନେ ମୋ ପାଖରୁ ବାହାର ଯାଆନ୍ତି । ପୁଣି ରଇତମାନଙ୍କୁ ପୀଡ଼ା ପୀଡ଼କଣ ଧନ ଶୋଷଣ ନକରିବା ଯୋଗୁଁ ଆମ ପୁଅ ପୁତୁରାମାନେ ଆମ ପ୍ରତି ଖଡ଼ଗହସ୍ତ ହୁଅନ୍ତି ।

**ଗୋରକ୍ଷାଶ୍ରମ**— ଗୋବ୍ରାହ୍ମଣ ସେବା ଶୁଶ୍ରୂଷା କରିବା ପ୍ରତ୍ୟେକ ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ । ମୋର ସବଦା ଏହି ଭାବ ଜାଗ୍ରତ ଥାଏ । କିନ୍ତୁ ଗୋ ବ୍ରାହ୍ମଣ ପ୍ରଧାନ ଭାରତ ଦେଶରେ ଆଜି ବ୍ରାହ୍ମଣ ନାହାନ୍ତି ବା ଅତ୍ୟନ୍ତ ବିରଳ ବୋଲିବାକୁ ହେବ । ସେହି ଗାଈ ଅଛନ୍ତି, କିନ୍ତୁ ସେବା ଶୁଶ୍ରୂଷା ଅଭାବରୁ ଅତ୍ୟନ୍ତ କ୍ଷୀଣ, ଦୁର୍ବଳ ଏବଂ ଦୁଗ୍ଧ ଦାନରେ ଅକ୍ଷମ । ଗୋଜାତିର ଏହି ଦୁର୍ଗତିରୁ କୃଷିପ୍ରଧାନ ଭାରତ ଦେଶର ଆଜି ଏହି ଅବନତି । ଚନ୍ଦଡ଼ା ଗ୍ରାମ ନିକଟ ସରକାର ତୋଟା ସମୀପରେ ସରକାରଙ୍କଠାରୁ ୯ଏକର ଭୂମି ଗୋରକ୍ଷାଶ୍ରମ ସ୍ଥାପନ ସକାଶେ ପାଇବାକୁ ହେଲା । ୧୯୨୩ ମାର୍ଚ୍ଚ ମାସ ୬ ତାରିଖ ବାଣଭୁମ୍ବ ଗ୍ରାମରେ ଆମର ଥିବା କିଣାଇତ ଭୂମି ୨୬ ଏକର, ଯାହାର ବାର୍ଷିକ ଆୟ ପ୍ରାୟ ୪୦୦ ଟଙ୍କା, ଉକ୍ତ ଭୂମି ଗୋରକ୍ଷାଶ୍ରମ ସକାଶେ ପ୍ରଦାନ କରାଗଲା । ସେଥି ସକାଶେ ନିରୂପଣ ପତ୍ର ରେଜିଷ୍ଟ୍ରି କରି ଦିଆଗଲା । ସବୁ ଅନୁଷ୍ଠାନ ସକାଶେ ମନ, ଧନ ଉଭୟ ଆବଶ୍ୟକ ।

ମଞ୍ଜୁଷାର ଜୟମଙ୍ଗଳ ରଥଙ୍କୁ ଚରିତ୍ରବାନ ଧର୍ମୀ ଏବଂ ଦେଶ ହିତୈଷୀ ବୋଲି ମୁଁ ଜାଣେ । ଏହାଙ୍କ ପ୍ରବର୍ତ୍ତନାରେ ଗୋରକ୍ଷାଶ୍ରମ

ମାନ୍ଙ୍କ ଭୂମି ଦାନପତ୍ର ରେଜେଷ୍ଟ୍ରି କରି ଦିଆଗଲା । କିନ୍ତୁ ଜୟମଙ୍ଗଳ ଓ ଯେଉଁମାନେ ଗୋରକ୍ଷାଶ୍ରମ ସ୍ଥାପନରେ ସାହାଯ୍ୟ ଦାନର ପ୍ରତିଜ୍ଞା କରିଥିଲେ, ଆଜି କାର୍ଯ୍ୟାରମ୍ଭବେଳେ ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟାପୃତ ରହି କିମ୍ବା ମୋହର ଦାନରେ ବିଶ୍ୱାସ ନକରି ଉକ୍ତ ଗୋରକ୍ଷାଶ୍ରମ ନିର୍ମାଣରେ ଯୋଗ ଦେଇ ପାରି ନାହାନ୍ତି । ଯାହାହେଉ ଭଗବାନଙ୍କ ଉପରେ ନିର୍ଭର କରି ୧୯୨୩ ସାଲ ମଇମାସରେ କାର୍ଯ୍ୟ ଆରମ୍ଭ କରାଗଲା । ଗୁଡ଼ପଲ୍ଲୀ ନିବାସୀ ଗୋବିନ୍ଦ ପଣ୍ଡାଙ୍କୁ ମାସିକ ୪୧୦୯ ବେତନରେ ନିଯୁକ୍ତ କରି ଉକ୍ତ ଆଶ୍ରମ ଯାଗା ଭିତରେ ଗୋଟିଏ କୂପ ଖନନ କରାଗଲା । ୧୭ ହାତରେ ଜଳ ହେଲା । ୨୧ ହାତ ଖୋଳା-ଗଲା । ଆଜିକାଲି କୌଣସି କାର୍ଯ୍ୟ ନିର୍ବାହ ସକାଶେ ସୁଦକ୍ଷ ଏବଂ ବିଶ୍ୱାସୀ କର୍ମଚାରୀ ଘଟନ୍ତି ନାହିଁ, ଦାୟିତ୍ୱ କର୍ତ୍ତବ୍ୟ ଜ୍ଞାନଯୁକ୍ତ ଲୋକ ମିଳନ୍ତି ନାହିଁ । ସମସ୍ତେ ଧନାଶୀ, ବହୁ ଲୋକ ପରଧନ ଅପହରଣ କରିବାକୁ ପୁଣି ଧର୍ମ କାର୍ଯ୍ୟରୁ ମଧ୍ୟ ଧନ ଅପହରଣ କରି ନେବାକୁ ଅନେକମାନେ ସଙ୍କୁଚିତ ହୁଅନ୍ତି ନାହିଁ । ଅତଏବ ଧନ ଥିଲେ ମଧ୍ୟ ମନର ଅଭାବରୁ ପୁଣି ମନ ଓ ଧନ ଥିଲେ ମଧ୍ୟ ଜନ ଅଭାବରୁ ଅନେକ ସତ୍‌କାର୍ଯ୍ୟ କରାଯାଇ ପାରେ ନାହିଁ ।

**ମୋର ଧର୍ମ ଧାରଣା**—ମୋର ଧର୍ମ ଧାରଣା ସ୍ଥୂଳତଃ ତିନି ଭାଗରେ ବିଭକ୍ତ କରାଯାଇ ପାରେ । ମୁଁ ପ୍ରାୟ ୧୫ ବର୍ଷ ବୟସରେ ସରକାରୀ ସ୍କୁଲରେ ଇଂରେଜୀ ଶିକ୍ଷା ଆରମ୍ଭ କଲି । ତତ୍‌ପୂର୍ବରୁ ମାତୃଭାଷାରେ ଲେଖା ପଢ଼ା ଓ ଗଣିତ ସଂସ୍କୃତ ଭାଷାରୁ କିଛି ଅଭିଧାନ ପୁଣି ସନ୍ଧ୍ୟା, ପୂଜା, ସ୍ତୁତି, ସ୍ତୋତ୍ର ଇତ୍ୟାଦି କେତେକ କର୍ମ କର୍ମାଣୀ ପାଠ ପଢ଼ିଥିଲି । ୧୨ ବର୍ଷଠାରୁ ୨୦ ବର୍ଷ ପର୍ଯ୍ୟନ୍ତ ପ୍ରଚଳିତ ହିନ୍ଦୁ ଧର୍ମରେ ଅର୍ଥାତ୍ ପ୍ରତିମା ପୂଜାରେ ପୁରୁଣା କଳ୍ପନାରେ, ଜାତି

ଭେଦରେ, ଅର୍ଥାତ୍ ଜନ୍ମ ବ୍ରାହ୍ମଣ ବା ବ୍ରାହ୍ମଣନାମାମାନଙ୍କ ଆଧି-ପତ୍ୟରେ ଏବଂ ସେମାନଙ୍କ ଦ୍ୱାନ ପ୍ରାୟଶ୍ଚିତ ସୂତ ସ୍ତେନ ଶୁଦ୍ଧ ଶ୍ରାଦ୍ଧ ଇତ୍ୟାଦି କର୍ମ କାଣ୍ଡରେ ପୂର୍ଣ୍ଣ ବିଶ୍ୱାସ, ଶ୍ରଦ୍ଧା ଓ ଭକ୍ତି କରିବାକୁ ଲାଗିଲି । ୨୦ ବର୍ଷଠାରୁ ୪୫ ବର୍ଷ ପର୍ଯ୍ୟନ୍ତ ମୋହର ଧର୍ମ ଧାରଣାର ଦ୍ୱିତୀୟ ଅବସ୍ଥା ବୋଲିବାକୁ ହେବ । ଏହି ସମୟରେ ରାଜାରାମ ମୋହନ ରାୟଙ୍କ ବ୍ରାହ୍ମ ଧର୍ମପ୍ରତି ମନ ଆକୃଷ୍ଟ ହେଲା । ଏହି ସମୟରେ ବ୍ରାହ୍ମଣ ଆଦି ଗୃହ ଜାତି ଭେଦ, ଦେବ ଦେବୀ ନାମରେ ମୂର୍ତ୍ତି ପୂଜା, ଖାଦ୍ୟପେୟରେ ଜାତିଗତ ପଭେଦ, ଆମିଷ, ନିରାମିଷ ଆଦି ଭେଦ ବିଚାର, ମନୁଷ୍ୟ ମନୁଷ୍ୟ ମଧ୍ୟରେ ସ୍ପର୍ଶ ବା ଦୃଷ୍ଟି ଦୋଷ, ଶୌଚ ଶୌଚ, ଶୁଦ୍ଧ ଶ୍ରାଦ୍ଧ ଇତ୍ୟାଦି କର୍ମକାଣ୍ଡ ଏବଂ ବେଦଶାସ୍ତ୍ର ଏ ସବୁଥିରେ ଆଉ କୌଣସି ବିଶ୍ୱାସ ବା ଆସ୍ଥା ରହିଲା ନାହିଁ । ଏହିସବୁ ଧର୍ମକର୍ମ କାଣ୍ଡ କେବଳ ମୂଢ ସ୍ୱାର୍ଥାନ୍ଧ, ଅତ୍ୟାଚାରୀ ବ୍ରାହ୍ମଣ ଜାତିର କପୋଳ କଳ୍ପନା ବୋଲି ଜ୍ଞାନ ହେଲା । ଏହି କାଳର ଶେଷ ଭାଗରେ ବ୍ରାହ୍ମଣ ଧର୍ମଠାରୁ ବୌଦ୍ଧଧର୍ମ ପ୍ରତି ମନ ଟିକିଏ ବଳିବାକୁ ଲାଗିଲା । ମହାତ୍ମା ବୁଦ୍ଧଦେବଙ୍କ ତପସ୍ୟା, ସ୍ୱାର୍ଥତ୍ୟାଗ, ଶିକ୍ଷା ଏବଂ ଆଦର୍ଶରେ କାହାର ମନ ବା ଆକୃଷ୍ଟ ନ ହେବ ? ଯାହାହେଉ ମୋର ଧର୍ମଧାରଣାର ଏହି ଅବସ୍ଥାକୁ ତୃତୀୟ କୁହାଯାଇ ପାରେ । ଆସିଭା ସବ୍ ରେଜଷ୍ଟ୍ରର ଥିଲାବେଳେ ଲାଲା ଲଜପତ ରାୟଙ୍କ ଆର୍ଯ୍ୟଧର୍ମ ପୁସ୍ତକ ଏବଂ ମହର୍ଷି ଦୟାନନ୍ଦ ସତ୍ୟାର୍ଥ ପ୍ରକାଶ ପାଠକରି ଆର୍ଯ୍ୟଧର୍ମ ପ୍ରତି ମନ ଏକା ବେଳକେ ବଦଳିଗଲା ।

## ଆର୍ଯ୍ୟଧର୍ମ—

ଆର୍ଯ୍ୟଧର୍ମ ହିଁ ଭାରତର ମୂଳ ପ୍ରାଚୀନ ସନାତନ ବୈଦିକ ଧର୍ମ । ଏକା ଭାରତ କାହିଁକି ସମଗ୍ର ଜଗତରେ ଧର୍ମ ବୈଦିକ ଧର୍ମ ଥିଲା । ସେହି ଧର୍ମହିଁ ସମସ୍ତ ଜଗତରେ ପୁନେ ପ୍ରସାରିତ ହେବ । ଏହି ଧାରଣା ମୋ ମନରେ ଦିନକୁ ଦିନ ଦୃଢ଼ତର ହେବାକୁ ଲାଗିଲା ବେଦକୁ ଆଭ୍ରାନ୍ତ ସତ୍ୟ ଈଶ୍ୱରବାଣୀ ବୋଲି

ଗ୍ରହଣ କରିବାକୁ ହେଲା । ମୂର୍ତ୍ତି ପୂଜା, ଶ୍ରଦ୍ଧ ଶ୍ରାଦ୍ଧାଦି ବେଦ ବିରୁଦ୍ଧ କର୍ମ-କାଣ୍ଡ, ଧର୍ମଗତ ଜାତିଭେଦ, ସ୍ପୃଶ୍ୟାସ୍ପୃଶ୍ୟ ବିଗ୍ରହ ଇତ୍ୟାଦି ଛାଡ଼ିବାକୁ ହେଲା । କେବଳ ଗୁଣକର୍ମ ଓ ସ୍ୱଭାବାନୁସାରେ ବର୍ଣ୍ଣ ଚତୁଷ୍ଟୟ ମାନିବାକୁ ହେଲା । ଆମିଷ ଭକ୍ଷଣ ଏକବାରେ ପରିତ୍ୟାଗ କରିବାକୁ ହେଲା । ଏହି ସମୟରେ ମୁଁ ଆର୍ଯ୍ୟଧର୍ମ, ଗୃହାଶ୍ରମ ଏବଂ ସତ୍ୟାର୍ଥ ପ୍ରକାଶର ଅନୁବାଦ ଲେଖିଥିଲି । ମୋର ନୈତିକ ଜୀବନ ଭିନ୍ନ ପ୍ରକାର ହେଲା । ନିତ୍ୟ ପଞ୍ଚ ମହାଯଜ୍ଞ କରିବାକୁ ହେଲା ବ୍ରହ୍ମଯଜ୍ଞ ବା ସନ୍ଧ୍ୟୋପାସନା, ଦେବଯଜ୍ଞ ବା ହୋମ, ପିତୃ ଯଜ୍ଞ ପିତୃସେବା ଓ ତର୍ପଣ, ନୃଯଜ୍ଞ ବା ଅତିଥି ସତ୍କାର ବଳିବୈଶ୍ୱଦେବୋ ଗୃହପାଳିତ ପଶୁପକ୍ଷୀ ଇତ୍ୟାଦିଙ୍କର ସେବା ଶୁଶ୍ରୂଷା । ମୁଁ ନିତ୍ୟ ପ୍ରାତଃ ସ୍ନାନ କଲି । ସୂର୍ଯ୍ୟୋଦୟ ପୂର୍ବରୁ ସ୍ନାନ ସନ୍ଧ୍ୟା ନକରି କୌଣସି କାର୍ଯ୍ୟରେ ଲାଗେନାହିଁ । ମୁଁ ଯଦି ବାଉଁଶ ଚୁଲିରେ ଚୁଆଁ ଲୁଗା ପିନ୍ଧି ଖାଇଲି ତେବେ ମୋହର ପଞ୍ଚ ମହାଯଜ୍ଞାନୁଷ୍ଠାନ, ନିରାମିଷାହାର ଇତ୍ୟାଦି ସବୁ ନିଷ୍ଫଳ ହେଲା ବୋଲି କୁସଂସ୍କାରୀ ସାମାଜିକମାନେ ଆକ୍ଷେପ କରିଥାନ୍ତି । କିନ୍ତୁ ସେହି ଆକ୍ଷେପ ପ୍ରତି ମୁଁ ଭ୍ରୂକ୍ଷେପ କରେ ନାହିଁ । ଏହି ସମୟରେ ମୁଁ ବୈଦ୍ୟ ଡାକ୍ତରଙ୍କ ଅନୁସରଣ ନକରି ସମସ୍ତ ପ୍ରକାର ଔଷଧ ସେବନ ଛାଡ଼ି ଜର୍ମାନ ପଣ୍ଡିତଙ୍କ ଖ୍ୟାତ୍ ଚିକିତ୍ସା ଗ୍ରହଣ କଲି । ଏହି ଜଳବାୟୁ ଓ ଆଲୋକର ଚିକିତ୍ସାରେ ମୁଁ ଅତ୍ୟନ୍ତ ଶୀର୍ଣ୍ଣକାୟ ହୋଇ ପଡ଼ିଥିଲେ ହେଁ ଖୁବ୍ ସବଳ ଥିଲି । ବାଟ ଦୁଇକୋଶ ଗଲିବାକୁ ହେଲେ ମୋହର ଯାନବାହାନ ଲୋଡ଼ା ନଥିଲା । ଏବେ ସର୍ବଦା ପଦ ବ୍ରଜରେ ଅକ୍ଲେଶରେ ଗମନ କରେ । ଧନକର ଛତ୍ରାବର ଠାରୁ ଆସିକା ପର୍ଯ୍ୟନ୍ତ ଅର୍ଥାତ୍ ୧୦ ମାଇଲ ରାସ୍ତା ୫ ଘଣ୍ଟାରେ ଯାଇ ପାରୁଥିଲି । ଏହି ଚିକିତ୍ସାରେ ଫଳାହାର ଏବଂ ବିଶେଷରେ ଫଳ ଆହାର କରିବାକୁ ହୁଏ । ଏହି ଚିକିତ୍ସା ବ୍ରହ୍ମଚର୍ଯ୍ୟର ଅତ୍ୟନ୍ତ ଅନୁକୂଳ ହୋଇଥାଏ । ଅତିଶକ୍ତ ପରିମାଣର ବାଷ୍ପ ବା ହାୱା ପ୍ରୟୋଗ ହେତୁ କିଛିକାଳ ମୋ କର୍ଣ୍ଣରେ ବଧିରତା ଆସିଥିଲା ।

# ଆତ୍ମ ପରିଚୟ—

କୌଣସି ଲୋକର ପରିଚୟ ପାଇବାକୁ ହେଲେ, କେବଳ ତାହାଙ୍କ ଲେଖାରୁ ତାହାଙ୍କର ପରିଚୟ ମିଳି ପାରେ ନାହିଁ । ତାହାଙ୍କର ଆଚରଣ ଓ ମନୋଗତ ଭାବ ବୁଝିବାକୁ ହେବ । ଆଚରଣ ସମ୍ବନ୍ଧରେ ଯେଉଁ ଅନିବାର୍ଯ୍ୟ ପ୍ରତିବନ୍ଧକ ଥାଏ, ତାହାର ମଧ୍ୟ ସମାଲୋଚନା କରିବାକୁ ହେବ । ତୁମର ସଙ୍ଗୀ ଲୋକମାନେ ଜଣାଗଲେ, ତୁମେ କି ପ୍ରକାର ଲୋକ ଚିହ୍ନାଯାଇ ପାରିବ । ଏହି ନିୟମ ସବୁବେଳେ ଠିକ୍ ନୁହେଁ । ଭାଇ ଭାଉଜ, ପୁଅ ପୁତୁରା, ସମ୍ବନ୍ଧୀ ଶ୍ୱଶୁର ଇତ୍ୟାଦି ସନ୍ନିକଟ ବନ୍ଧୁମାନେ ସଙ୍ଗୀ ଲୋକ । ଏମାନଙ୍କ କଥା ଛାଡ଼, ନିଜ ଭାର୍ଯ୍ୟା ଯାହାକୁ ଅର୍ଦ୍ଧାଙ୍ଗିନୀ କହନ୍ତି, ତାହାଠାରୁ ଅଧିକ ସଙ୍ଗିନୀ ଆଉ କିଏ ଅଛି ? ତଥାପି ସେହି ପତ୍ନୀ ମଧ୍ୟ ପତିର ସମ୍ପୂର୍ଣ୍ଣ ବିରୋଧାଚାରିଣୀ ହୁଏ । ସ୍ତ୍ରୀମାନଙ୍କର ନାକ, କାନ ଫୋଡ଼ି ଏତେଗୁଡ଼ିଏ ଅଳଙ୍କାର ଭରି ହେବା ପୁଣି ଗୋଡ଼ରେ ଖଡ଼ୁ, ବଳା ଇତ୍ୟାଦି ଭାରବହି ବାନ୍ଧଛନ୍ଦ ହୋଇ ରହିବା, ଗୁରୁଜନ ଓ ଆତ୍ମୀୟ ଲୋକ-ମାନଙ୍କ ସେବା ସତ୍କାର ନକରି ପରଦା ଜନ୍ତା ଭିତରେ ମୂଷାପରି ଆବଦ୍ଧ ରହିବା, ଲେଖାପଢ଼ା କିଛି ନକରିବା ଇତ୍ୟାଦି ପ୍ରଥାକୁ ମୁଁ କଦାପି ପସନ୍ଦ କରେନାହିଁ । ତଥାପି ମୋର ସ୍ତ୍ରୀ ନିରକ୍ଷରା, ମୂର୍ଖା, ନାକ ଫୋଡ଼ି, କାନ ବିନ୍ଧି, ତହିଁରେ କେତେକ ପ୍ରକାର ଅଳଙ୍କାର ଧରିଛନ୍ତି । ହାତରେ ଖଡ଼ୁ ଗୁଞ୍ଜର, ଗୋଡ଼ରେ ବଳା ପାହୁଡ଼ ଇତ୍ୟାଦିରେ ହରି ଶାଙ୍କୁଳୀ ପଡ଼ିଛନ୍ତି । ବୁଢ଼ୀ ଆସି ହେଲେଣି, ଅଳଙ୍କାର ମୋହ ଛାଡ଼ିପାରୁ ନାହାନ୍ତି । ନାମରେ ମାତ୍ର ମୋହର ସହଧର୍ମିଣୀ, କିନ୍ତୁ ବାସ୍ତବିକ୍ ସ୍ୱାମୀ ଧର୍ମ ବିରୋଧୀ । ମୋର ଜୀବନଯାକ କେତେ ବୁଝାପୋଛା ଦେଖାଶିଖା ଇତ୍ୟାଦି କଲି, କିନ୍ତୁ ବାହ୍ୟ ବେଶ ଭୂଷାରେ କିମ୍ବା ଅନ୍ତରିକ ଭାବ ବିଶ୍ୱାସରେ କାହିଁ କିଛି ପରିବର୍ତ୍ତନ ଦେଖାଗଲା ନାହିଁ । ପରବର୍ତ୍ତୀ ଜୀବନରେ ଏହି ସାଧନାର ସଫଳ ହେବ ପରା ।

ଆମ ଭଣଜାକୁ ନିଜଘରକୁ ନେଇ ପାଖରେ ରଖିଲି, ଆଦର୍ଶ ଶିକ୍ଷା ଦେଲି । ସ୍ୱଚାକଟା ଜାଣିଥିଲେ ହେଁ ସେ ଅରଟ ଧରିଲା ନାହିଁ । ସ୍ୱଦେଶୀ ଖଦି ଛାଡ଼ି ବିଦେଶୀ କଳ ଲୁଗା ପୋଷାକରେ ବିଭୂଷିତ ହେଲା । ନ୍ୟାୟଁ ପୁଅ ବା ତାହାଙ୍କ

କଥା ଶୁଣିବେ ? ମୁଁ ଯେତେ ଶାନ୍ତି ଓ ପଞ୍ଚାୟତ ଚାହୁଁଥାଏ ସେ ସେତେ ମାମ୍ଲା ମକଦ୍ଦମାର ମାତ୍ରା ବଢ଼ାଇବାରେ ଚେଷ୍ଟା କରୁଥାନ୍ତି ।

ସେଦିନ ମୁଁ ଆମ ଛତାବରଠାରୁ ଆସିବା ପର୍ଯ୍ୟନ୍ତ ପ୍ରାୟ ୨୦ ମାଇଲ ରାସ୍ତା ଚାଲିଗଲି । ଓକିଲ ଭାଇ ବିସ୍ମୟାନ୍ବିତ ହୋଇ ମତେ ନେଇ ତାଙ୍କ ମହକିଲ ମାନଙ୍କୁ ଦେଖାଇ କହୁଛନ୍ତି — ପଚାର ଆମ ଭାଇ କିପରି ଅର୍ଥାତ୍ କେଉଁ ଯାନରେ ଆସିଛନ୍ତି । ସେତେବେଳେ ମୁଁ କହୁଥିଲି ଯେ ମୁଁ ଦୁଇଖଣ୍ଡ ଦୁଇଗୋଡ଼ିଆ ଗାଡ଼ି କରିଥିଲି । ଖଣ୍ଡିକରେ ମୁଁ ବସିଥିଲି, ଅନ୍ୟଟିରେ ମୋର ସାମାନ ରଖାଯାଇଥିଲା । ଏକେ ମୋହର ଖଣ୍ଡିକ ଦୁଇଗୋଡ଼ିଆ ଗାଡ଼ି ଅନ୍ୟ ଗାଡ଼ିଟି ମୋର ପ୍ରଜାଙ୍କ ଘରର । ଆମ ଭାଇମାନେ ନଗର ହେଉ ବା ସହର ହେଉ ପଛେ ମୋଟର, ଘୋଡ଼ା ବା ବଳଦ ଗାଡ଼ି ନ ହେଲେ ପାହୁଣ୍ଡେ ଯିବେ ନାହିଁ । ମୋହର ଏହି ଆତ୍ମୀୟ ବା ଉକ୍ତ ସମ୍ବନ୍ଧୀମାନଙ୍କୁ ଦେଖିଶୁଣି ପାଠକେ ଭଲ କହନ୍ତୁ ମୋହର ସ୍ୱଭାବ ଚରିତ୍ର ଓ ଗୁଣ କର୍ମର କି ପରିଚୟ ପାଇ ପାରିବେ ?

ସେଦିନ ମୋହର ପୁରୀ ଯାତ୍ରା ବେଳେ କୋଦଳା ନିକଟରେ ଖଲ୍ଲିକୋଟ ଏଷ୍ଟେଟ ଅଫିସର ଦୁଇଜଣ କର୍ମଚାରୀ ମତେ ଦେଖିଥିଲେ । ସେମାନେ ତେଜପୁର ଦେଖା ଯାଉଥିଲେ କିନ୍ତୁ କୁଳ୍‌ଟିଙ୍କା ଅଛନ୍ତି ସମ୍ପର୍କ ଅଚିହ୍ନା ରହୁଥିଲେ । ସେମାନେ କହୁଥିଲେ — ଆପଣ ସିନା ଚିହ୍ନିପାରୁ ନାହାନ୍ତି କିନ୍ତୁ ଲୋକେ ଆପଣଙ୍କୁ ଚିହ୍ନିପାରୁ ଅଛନ୍ତି । ଏଥିରୁ ବୁଝି ପାରିବେ ଯେ ସାଧାରଣ ଲୋକଙ୍କ ଅପେକ୍ଷା ମୋହର ସ୍ମରଣ ଶକ୍ତି ଖୁବ କମ କିମ୍ବା କେତେ ଜଣଙ୍କ ମଧ୍ୟରେ ମୁଁ ଜଣେ ହେବାରୁ ସେମାନେ ମୋତେ ସହଜରେ ଚିହ୍ନି ପକାନ୍ତି । କିନ୍ତୁ ମୁଁ ସେମାନଙ୍କୁ ବିଶେଷ ଭାବରେ ଚିହ୍ନି ରଖି ପାରେ ନାହିଁ । ତଥାପି ଚେହେରାଟି ଯାହା ଚିହ୍ନିବାକୁ ହୁଏ ତାହା ପୂର୍ଣ୍ଣ ଆକାରର ପରିଚୟ ହୋଇ ପାରେନାହିଁ ।

•

ମୁଁ ଅନେକ ସମୟରେ ସମାଜ ସଂସ୍କାର ଉଦ୍ଦେଶ୍ୟରେ ନାନା ପ୍ରକାର ଆନ୍ଦୋଳନ ଆରମ୍ଭ କରିଥାଏ । ଇଚ୍ଛାପୁରର ଗଦାଧର ବିଦ୍ୟାଭୂଷଣ ଉତ୍କଳର ଜଣେ

ବିଚକ୍ଷଣ ପଣ୍ଡିତ । ଏହାଙ୍କୁ ବିଶେଷ ଅନୁରୋଧ କରି ଏହାଙ୍କ ଦ୍ୱାରା ଦ୍ୱିତୀୟବାର ସଂସ୍କାର ପତ୍ରିକା ବାହାର କରାଇଥିଲି । ଇଚ୍ଛାପୁରଠାରେ କେତେ ଜଣ ଉତ୍ସାହୀ ଯୁବକଙ୍କ ସାହାଯ୍ୟରେ ଚକ୍ରପାଣି ବେବର୍ତ୍ତା, ଜୟମଙ୍ଗଳ ରଥ, ହରମୋହନ ପଟ୍ଟନାୟକ, ଉପଦେଷ୍ଟା ସତ୍ୟନାରାୟଣ ପ୍ରଭୃତିଙ୍କ ସହଯୋଗିତାରେ ବ୍ରହ୍ମପୁର-ଠାରେ ଏକ (ସମାଜ ସଂସ୍କାର ସଂଘ) ଆୟୋଜନ କରାଯାଇଥିଲା । କିନ୍ତୁ ଆଶାନୁରୂପ ଫଳ ଫଳିଲା ନାହିଁ । ସେତେବେଳେ ମୁଁ ଏପରି ସଂସ୍କାର ପ୍ରସ୍ତାବ ପରି ତ୍ୟାଗ କରି ଉତ୍କଳରେ ଆର୍ଯ୍ୟସମାଜ ସ୍ଥାପନ ଚେଷ୍ଟା କଲି ! ରସଲ-କୁଣ୍ଡାଠାରେ ଜୟମଙ୍ଗଳ ରଥ, ହରିହର ସଦସ୍ୟ, ଅନ୍ତର୍ଯ୍ୟାମୀ ପଟ୍ଟନାୟକ ଓ ଓ ମହାଦେବ ରାଉତ ଏମାନଙ୍କୁ ନେଇ ଆର୍ଯ୍ୟସମାଜର ଅନ୍ତରଙ୍ଗ ସଭା ଗଠନ କରାଗଲା । ରସୁଲକୁଣ୍ଡାରେ ଅବସ୍ଥିତ ଥିବା ପକ୍କା କୋଠାରୁ ଦକ୍ଷିଣ ଦିଗ ଘର ଉତ୍କଳ ଆର୍ଯ୍ୟସମାଜ କାର୍ଯ୍ୟାଳୟ ସକାଶେ ମୁଁ ଦାନ କରିଦେଲି । ଏହି ଦାନର ନିରୂପଣ ପତ୍ର ୧୯୨୩ ମାର୍ଚ୍ଚ ୫ ତାରିଖରେ ରସୁଲକୁଣ୍ଡା ସବରେଜିଷ୍ଟ୍ରାର ଅଫିସରେ ରେଜିଷ୍ଟ୍ରାର କରାଗଲା ।

## ମୋହର ଉଇଲ—

ଆମ୍ଭର ଯାହାକିଛି ସ୍ୱଳ୍ପ ଚିରସ୍ଥିର ସଂପତ୍ତି ଥାଏ, ସେଥିରୁ ଭବିଷ୍ୟତ ନିର୍ବାହ ସକାଶେ ଅନେକ ସମୟରେ ଅନେକ ପ୍ରକାର ଉଇଲ୍ ଲେଖି ରଖିଥାଏ, ଯେହେତୁ ଏହି କ୍ଷଣ ଭଙ୍ଗୁର ସଂସାରରେ ଜୀବନ ସ୍ଥିର ନୁହେଁ । କେତେବେଳେ ଅକସ୍ମାତ୍ ଆଚମ୍ବିତେ ଘଟଣାନ୍ତର ପରିବର୍ତ୍ତନ ଜଣାଯାଏ ନାହିଁ । ଆମ ବୈମାତୃକ ଭାଇ ନରସିଂହ ପଣ୍ଡାଙ୍କ ପୁଅକୁ ପୋଷ୍ୟ ପୁତ୍ର ନେଇଥିଲି ଏବଂ ଉକ୍ତ ନାମରେ କିଛି ସଂପତ୍ତି ଲେଖି ଦେଇ ଅବଶିଷ୍ଟ ସଂପତ୍ତିତକ ଗୋରକ୍ଷା-ଶ୍ରମ, ବିଧବାଶ୍ରମ, ବାଳିକା ବିଦ୍ୟାଳୟ ଏବଂ ଆର୍ଯ୍ୟ ସମାଜ ପାଇଁ ଲେଖି ଦେବା ଦେଖି, ଆମ୍ଭ ଭାଇ ନରସିଂହ ପଣ୍ଡା ମୋ ବିରୋଧରେ ଉଠିଲେ । ଆମ୍ଭେମାନେ ୧୦।୧୫ ବର୍ଷ ପୂର୍ବରୁ ଭାଗ ହୋଇ ଯେଉଁ ସଂପତ୍ତି ନିର୍ବିବାଦରେ ଭୋଗ କରି ଆସୁଥିଲେ ହେଁ ମୋହର ଦଖଲ ସଂପତ୍ତିରେ ତାହାଙ୍କର ଭାଗ ଅଛି ବୋଲି

କହି ମିଥ୍ୟା ଅଭିଯୋଗରେ ସେ ବଳପୂର୍ବକ ଭୂମି ଆକ୍ରମଣ କଲେ, ମାମଲା ମକଦ୍ଦମା ଆରମ୍ଭ କଲେ । ମକଦ୍ଦମା ଅନ୍ୟାପାରରେ ପଶିବା ମୋହର କେବେ ହେଁ ଇଚ୍ଛା ନ ଥାଏ । ତହିଁରେ ପ୍ରତି ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ସେତେବେଳେ ନରସିଂହ ଭାଇଙ୍କି ମନ୍ଦାର ଗ୍ରାମରେ ମୋହର ୮ ଏକର ଜମି ସେଟଲମେଣ୍ଟ କରି ଦେଲି ।



ପୁତ୍ର ସନ୍ତାନ ଥିଲେ ପୈତୃକ ସଂପତ୍ତି ଅନ୍ୟ କାହାକୁ କିମ୍ବା କୌଣସି ଧର୍ମ କାର୍ଯ୍ୟରେ ଦିଆଯାଇ ପାରନ୍ତା ନାହିଁ । ସୌଭାଗ୍ୟକ୍ରମେ ପୁତ୍ର ନ ଥିବାରୁ ଧର୍ମ କର୍ମରେ କିଛି ସଂପତ୍ତି ବିନିଯୋଗ କଲବେଳେ ଜ୍ଞାତିମାନେ ଦାବାନଳ ସ୍ୱରୂପ ବହୁ ଅନିଷ୍ଟ କରିଥାନ୍ତି । ୧୮୯୯ ସାଲରେ ଆମ୍ଭେମାନେ ବାଣ୍ଟି ହେଲୁ । ସେତେବେଳେ ନରସିଂହ ନାବାଳକ ଥିଲେ, ତାଙ୍କ ମାଆ ତାଙ୍କର ଅଭିଭାବିକା ଥିଲେ । ନରସିଂହଙ୍କର ନାବାଳକତ୍ୱ ଯାଇ ୧୬।୧୭ ବର୍ଷ ବିତି ଗଲା । ଏମଧ୍ୟରେ ଆମ୍ଭେମାନେ ସୁଖଶାନ୍ତି ଓ ସୌହାର୍ଦ୍ଦ୍ୟ ସହକାରେ ରହିଲୁ । ୧୯୨୩ ସାଲରେ ନରସିଂହ ମୋ ସଙ୍ଗେ ବିବାଦ କରି ଆମ ଭୂମି ଆକ୍ରମଣ କରନ୍ତି । ପୁଅ ଏକା ଘରେ ସବୁ ସବା, ଝିଅ କିଛି ନୁହେଁ ଏହାହିଁ ଜ୍ଞାତିମାନଙ୍କର ଧାରଣା । ଆମ୍ଭର ଜଣେ ଭାଇ କାଶୀନାଥ ଷଣ୍ଡା ଅପୁତ୍ରିକ ଥାଇ ଆପଣାର ଏକମାତ୍ର ଝିଅକୁ ଆପଣାର ସଂପତ୍ତି ଦେଇଗଲେ ବୋଲି ଅନ୍ୟ ଭାଇମାନେ ତାଙ୍କ ପ୍ରତି ବିଦ୍ୱେଷୀ । ଭାରତ ଦେଶରେ ସର୍ବତ୍ର ନାରୀ ଜାତିର ନିର୍ଯ୍ୟାତନା । ଏହାହିଁ ଭାରତ ଦେଶ ଅବନତିର ଏକ ପ୍ରଧାନ କାରଣ ।

ଜାତି ବହୁଳ ଭାରତ ଦେଶରେ ଜାତିଆଣ ସଭା ବାଡ଼ ସ୍ୱରୂପ ହୋଇ ସମାଜରେ ବହୁ ଅନିଷ୍ଟ ସଂପାଦନ କରେ । ୧୯୨୩ ସାଲ ବୈଶାଖ ପୂର୍ଣ୍ଣିମା ଦିନ ମୁସ୍ତପୁର ଗଡଙ୍କ ଠାରେ ସାରୁଆ ବ୍ରାହ୍ମଣ ମାନଙ୍କର ଜାତି ଆଣ ସଭା ହୋଇଥିଲା । ଏକମାତ୍ର ବ୍ରତ ବିବାହାଦି କାର୍ଯ୍ୟରେ ସଭାକ୍ଷତ ନାମରେ ଯେଉଁ ଧନ ଆଦାୟ ହୁଏ ତାହାର ସଂଗ୍ରହ କରିବା ହିଁ ଏହି ସଭାର ପ୍ରଧାନ ଉଦ୍ଦେଶ୍ୟ ଥିଲା । ଏହି ଧନ ସବୁ ସେମାନଙ୍କର ଇଷ୍ଟ ଦେବତା ସୁନ୍ଦର ମାଧବ କପିଳେଶ୍ୱର

ମନ୍ଦିର ମରାମତି ବାବଦରେ ଖର୍ଚ୍ଚ କରିବାକୁ ନିଶ୍ଚୟ କରିଥିଲେ । ସେତେବେଳେ ମୋହର ପ୍ରସ୍ତାବକ୍ରମେ ଉକ୍ତ ଧନରୁ ବେଦଶିକ୍ଷା ଓ ଗୋରକ୍ଷା ସକାଶେ କିଛି ଦେବା ସ୍ଥିର ହେଲା । କିନ୍ତୁ ସଭାର କର୍ତ୍ତୃପକ୍ଷ ବେଦଶିକ୍ଷା ଓ ଗୋରକ୍ଷା ସକାଶେ କିଛି ମାତ୍ର ଦେଇ ନାହାନ୍ତି ।

• ୧୯୨୫ ସାଲ ବେଳକୁ ପ୍ରାୟ ୧୫,୦୦୦ ଟଙ୍କା ବ୍ୟୟରେ ସଂକଳ୍ପିତ ଗୋ-ରକ୍ଷାଶ୍ରମ ଯଥା ତଥା ସ୍ଥାପିତ ହୋଇଗଲା । ବାଣତିମ୍ବ ଗ୍ରାମରେ ଟ ୧୨୦୦୦ ମୂଲ୍ୟରେ ୩୦ ଏକର ନିରାପତ୍ତ ଜମି ଦିଆଗଲା ଏବଂ ଟ ୩୦୦୦ ଖର୍ଚ୍ଚରେ ଗୋଶାଳା ଘର, ଆଶ୍ରମ ଗୃହ ଏବଂ କୂପ ନିର୍ମାଣ କରାଗଲା । ଛଅଘର ରଯ୍ୟତ ଗୋଶାଳା ଭିଟିରେ ନିବାସ କରି, ଉକ୍ତ ଭୂମି ଚାଷକରି ଅଧ୍ୟରୁ ଅଧେ ଗୋଶାଳାକୁ ଦେଇ ବାକି ଅଧକ ପୁତ୍ରପୌତ୍ରାଦି କ୍ରମେ ଚିରକାଳ ଭୋଗ କରିବା ପାଇଁ ସେମାନଙ୍କୁ ରଯ୍ୟତପଟ୍ଟା ରେଜେଷ୍ଟ୍ରି କରି ଦିଆଗଲା । ଗୋଶାଳା ଭିଟିରେ ନିବାସ କରି ଗୋମାତାର ଅମୃତ ମଳୋଦ୍ଧ ସକାଶେ କିଛି ବାର୍ଷିକ କର ଦେବା ନିମନ୍ତେ ଅନ୍ୟାନ୍ୟ ଲୋକଙ୍କୁ ମଧ୍ୟ ଗୋଶାଳା ଭୂମିରୁ ଭିଟି ରେଜେଷ୍ଟ୍ରି କରି ଦିଆଗଲା ।

ମନ୍ଦାର ଗ୍ରାମରେ ଆମ୍ଭର ପଢ଼ଣାଘର କୃଷ୍ଣ ପଣ୍ଡାଙ୍କ ସ୍ତ୍ରୀ ବିୟୋଗ ହୋଇ ଯିବାରୁ ତାହାଙ୍କର ଦୁଇ ବର୍ଷ ବୟସ୍କା ଜମୁନାନାମ୍ନୀ କନ୍ୟାଟିକୁ ଆମ ସ୍ତ୍ରୀ ନେଇ ପୋଷି ପାଳି ରଖିଲେ । ବନମାଳୀ ବୋଲି ଆଉ ଜଣେ ଅନାଥ ବାଳକ ମଧ୍ୟ ଥିଲା । ଏହି ଦୁଇ ବାଳକ ବାଳିକାକୁ ପୋଷିପାଳି ରଖି ବିଦ୍ୟାଶିକ୍ଷା ଦେଇ ସେମାନଙ୍କୁ ବିବାହ କରାଇ ଦେଇ ଆମ୍ଭର ଅବଶିଷ୍ଟ ଭୂ ସମ୍ପତ୍ତି ଟିକେ ସେ ଦୁହିଁଙ୍କୁ ଦେଇ ଦେବା ଇଚ୍ଛା ଦିନୁ ଦିନ ମୋର ଏବଂ ମୋ ସ୍ତ୍ରୀର ବଳବତୀ ହେଉଥିଲା । ଦୁର୍ଘଟଣା କ୍ରମେ ୧୯୨୮ ସାଲ ଜ୍ୟେଷ୍ଠ ଅମାବାସ୍ୟା ଉପଲକ୍ଷେ ନିଜ ଭଉଣୀକୁ ଦେଖି ଆସିବା ପାଇଁ ବନମାଳି ବ୍ରାହ୍ମଣ ଛାଡ଼ି ଗଲା । କିନ୍ତୁ ସେଠାରୁ ଆଉ ଫେରିଲା ନାହିଁ । ଅନ୍ୟ ଏକ ପିଲା ସଙ୍ଗରେ ପଡ଼ି ସେ କଲିକତା ବାହାରି ଗଲା । ଯାହାକୁ ଯାହା ଯୋଗ ଅଛି, ସବୁ ଈଶ୍ୱରଙ୍କ ଇଚ୍ଛା ।

## ଛାପାଖାନା—

ଖ୍ରୀ ୧୯୨୦ ରେ ପେନସନ ଗ୍ରହଣ ପରେ ୧୯୨୪ ପର୍ଯ୍ୟନ୍ତ ରସଲକୁଣ୍ଡା-ଠାରେ ସ୍ୱଦେଶୀ ନାମରେ ଗୋଟିଏ ଛାପାଖାନା ରଖାଗଲା । ବେଲଗୁଣ୍ଠା ନିବାସୀ ଆନନ୍ଦ ସାହୁ ଛାପାଖାନାର ପରିଚାଳକ ହେଲେ । ନାନା ପ୍ରକାର ପୁସ୍ତକ ଛାପା ହେଲା । ନାନା ବାଧା ବାଧକତା ଯୋଗୁଁ ସ୍ୱଦେଶୀ ନାମକ ମାସିକ ପତ୍ରିକା ବାହାର ପାରିଲା ନାହିଁ । ୧୯୨୪ ସାଲରେ ଆନନ୍ଦ ସାହୁ ସହିତ ମନାନ୍ତର ଘଟିବାରୁ ସେ ଛାପାଖାନା ଛାଡ଼ିଦେଲେ ଓ ରଣପୁର ଚାଲିଗଲେ । ଛାପାଖାନା ପୁଣି ରଘୁନାଥ ମିଶ୍ରଙ୍କୁ ପାଞ୍ଚବର୍ଷ ପାଇଁ ଠିକା ଦିଆ ହୋଇଗଲା । ରଘୁନାଥ ମିଶ୍ର ରସଲକୁଣ୍ଡାଠାରୁ ଆମର ସେହି ଛାପାକଲ ଆଦି ଜିନିଷ ନେଇ ବ୍ରହ୍ମପୁରଠାରେ 'ମଙ୍ଗଳା ବନ୍ଧୁ ପ୍ରେସ' ନାମରେ ଛାପାଖାନା ଆରମ୍ଭ କଲେ । ସେ ଚୁକ୍ତି ଅନୁସାରେ ଟଙ୍କା ଦେଇ ନ ପାରି କମ୍ପା କାର୍ଯ୍ୟକରିଦେଇ ନପାରି ବଡ଼ ହଇରାଣ କଲେ । ସେହି ମଙ୍ଗଳା ବନ୍ଧୁ ପ୍ରେସରୁ ରଘୁନାଥ ମିଶ୍ରେ ମୋହର "ଅର୍ଘ୍ୟ" ନାମକ ଗୋଟିଏ ମାସିକ ପତ୍ରିକା ବାହାର କରି ଦେବେ ବୋଲି ସର୍ତ୍ତ କରି-ଥିଲେ ତାହା ପାଳନ କଲେନାହିଁ । ଅନେକ ଲୋକଙ୍କର ମୁଁ ଉପକାର କରିଅଛି; କିନ୍ତୁ ପ୍ରତିବଦଳରେ ଅପକାର ପାଇଛି । ରଘୁନାଥ ମିଶ୍ର ମଧ୍ୟ ସେହି ମନ୍ଦ ବା ତତୋଧିକ ଅକୃତଜ୍ଞ ଓ କୃତଘ୍ନ ହେଲେ ।

୧୯୨୮ ରେ ପୁଣି ସତ୍ୟବାଦୀ ପ୍ରେସରେ ଆରୋଗ୍ୟ ବିଧାନ ନାମକ ମୋର ଗୋଟିଏ ଅନୁବାଦ ପୁସ୍ତକ ଛାପାଗଲା । ଏପୁସ୍ତକର ପାଣ୍ଡୁଲିପି ୨ ବର୍ଷ ପର୍ଯ୍ୟନ୍ତ ପାଖରେ ରଖି ରଘୁନାଥ ମିଶ୍ରେ ମଙ୍ଗଳା ବନ୍ଧୁ ପ୍ରେସରେ ଛାପି ଦେଲେ ନାହିଁ ।

## ସଂସ୍କାର ମାସିକ ପତ୍ର—

୧୯୨୬ ମସିହା ଠାରୁ ବ୍ରହ୍ମପୁର ଠାରେ "ସଂସ୍କାର" ନାମକ ମାସିକ କାଗଜ ମୋହର ସଂପାଦକତ୍ୱରେ ଏବଂ ଅଧୀନତାରେ

ପ୍ରକାଶ କରାଗଲା । ଜୟମଙ୍ଗଳ ରଥ ଉକ୍ତ ମାସିକ ପତ୍ରିକାର ସମ୍ପାଦକ ନିଯୁକ୍ତ ହେଲେ । ଏହି ସଂସ୍କାର ପ୍ରକାଶ ନିମନ୍ତେ ମୁଁ ମାସିକ ଟ ୫୦୯ ମାତ୍ର ଦିଏ । ଏହି ଟଙ୍କାରେ ସମସ୍ତ କାର୍ଯ୍ୟ ନିର୍ବାହ ହୁଏ । ୧୯୨୭ ଶେଷ ପର୍ଯ୍ୟନ୍ତ ଏକବର୍ଷ ମାତ୍ର ମୋହର ସଂପାଦକତ୍ୱରେ ଏବଂ ସମ୍ପୂର୍ଣ୍ଣ ସାହାଯ୍ୟରେ 'ସଂସ୍କାର' ପ୍ରକାଶିତ ହେଲା । ଏହିବର୍ଷ ପ୍ରାୟ ଦୁଇଶତ ପର୍ଯ୍ୟନ୍ତ ଗ୍ରାହକ ଆଦାୟ ହେଲା । ପରେ ଶ୍ରୀ ଜୟମଙ୍ଗଳ ରଥ ସେହି ଟଙ୍କାତକ ସଂସ୍କାର କାମରେ ନ ଲଗାଇ, ଇଚ୍ଛା ଅନୁସାରେ ଅନ୍ୟାନ୍ୟ ପ୍ରଚାର କାର୍ଯ୍ୟରେ ଖର୍ଚ୍ଚ କଲେ । ମୋ ଠାରୁ ମାସିକ ଟ ୫୦୯ ସାହାଯ୍ୟ ମିଳେ ବୋଲି ପତ୍ରିକାର ଗ୍ରାହକ ଆଦାୟ ପ୍ରତି ସେ ମନଯୋଗ ଦେଲେ ନାହିଁ । ପୁଣି ମୁଁ ଦୂରସ୍ଥ ଗୋଶାଳାରେ ରହିବା ଲାଗି ମୋର ଆଦେଶ ଓ ଇଚ୍ଛା ବିରୁଦ୍ଧ ଲେଖାମାନ ସଂସ୍କାରରେ ପ୍ରକାଶ କଲେ । ଏହିସବୁ କାରଣରୁ ସଂସ୍କାର ପ୍ରକାଶ କାର୍ଯ୍ୟ ଜୟମଙ୍ଗଳଙ୍କୁ ଦେଇ ଦେଇ ଦ୍ୱିତୀୟ ବର୍ଷ ପ୍ରାରମ୍ଭରୁ ମୁଁ ତହିଁରୁ ନିବୃତ୍ତ ହେଲି ।

## ବିଧବାଶ୍ରମ —

ବ୍ରହ୍ମପୁରଠାରେ ସଂସ୍କାର ଅଫିସ ଏବଂ ବିଧବାଶ୍ରମ ସ୍ଥାପନ କରିବା ପାଇଁ ଜୟମଙ୍ଗଳଙ୍କ ପିତା ନାରାୟଣ ରଥଙ୍କ ପରାମର୍ଶାନୁସାରେ ବ୍ରହ୍ମପୁର ନିକଟ ଲଂଜ ପଲ୍ଲିଠାରେ ଗୋଟିଏ ଭଡ଼ା ଘର ଜାଗା କଣା ହେଲା । କିନ୍ତୁ କିଛି ଅସୁବିଧା ଯୋଗୁ ସେହି ଟାଗାଟା ବିକି ଦିଆଗଲା । ତାପରେ ୧୯୨୭ ଅକ୍‌ଟୋବର ମାସରେ ବ୍ରହ୍ମପୁରଠାରେ ବ୍ୟାଙ୍କ ନିକଟରେ, ଏକ ଜାଗା କଣାଗଲା । ଏଠାରେ ବିଧବାଶ୍ରମ ସ୍ଥାପନରେ ପ୍ରାୟ ଏକ ବର୍ଷ ଚାଲିଗଲା । ସ୍ଥାନୀୟ ଲୋକଙ୍କଠାରୁ ସାହାଯ୍ୟ ସହାନୁଭୂତି ମିଳିଲା ନାହିଁ । ପୁଣି କେହି ତ୍ୟାଗୀ କର୍ମୀ

ମଧ୍ୟ ବାହାରିଲେ ନାହିଁ । ଲକ୍ଷ୍ମୀଧର ବିଧବା ବିବାହ ସହାୟକ ସଭା ସମୀପକୁ ବାରମ୍ବାର ପତ୍ର ଲେଖି ଅନୁରୋଧ କରିଗଲେ । ମୋର ଯେଉଁ ଘରଟା ନେଇ ତହିଁରେ ସେମାନେ ନିଜ ଖରଚରେ ବିଧବାଶ୍ରମ ଖୋଲିବା ପାଇଁ ସଭାର ଶେଷ ସିଦ୍ଧାନ୍ତ ଜାଣିବାରେ ବହୁ ବିଳମ୍ବ ହେଲା । ଏହେତୁ ବିଧାବଶ୍ରମ ଓ ସଂସ୍କାର ଅଫିସ ନିମନ୍ତେ କଣା ଯାଇଥିବା ବ୍ରହ୍ମପୁର ଘର ମୁନସଫ୍ ଗଣେଶ ମହାପାତ୍ରଙ୍କୁ ବିକି ଦିଆଗଲା । ୧୯୨୭ ଖ୍ରୀଷ୍ଟାବ୍ଦରେ ମୋହର ଅତ୍ୟନ୍ତ ଅର୍ଥାଭାବ ଘଟିଥିଲା । ତଥାପି ଋଣ ଉଧାର କରି ଅନେକ କାର୍ଯ୍ୟରେ ହସ୍ତକ୍ଷେପ କରିଅଛି । ଗୋଶାଳାର ପ୍ରାଚୀର ମଧ୍ଯ ଦକ୍ଷିଣ ପଟେ ଅନ୍ୟ ଏକ ଗୋଶାଳାର ନିର୍ମାଣ କରାଯାଇଅଛି । ଏଥିରେ ୧୦୦୦ ଟଙ୍କା ଖର୍ଚ୍ଚ ହେବାର କଥା । ବେଲଗୁଣ୍ଠା ପଲ୍ଲୀବାସୀ ପ୍ରେସରୁ ଆର୍ଯ୍ୟ ନାମରେ ଗୋଟିଏ ମାସିକ ପତ୍ର ପ୍ରକାଶନର ଆୟୋଜନ ଲାଗିଛି । ଅନ୍ତତଃ ମାସିକ ଟ ୨୫୲ ବ୍ୟୟ ହେବ । ପୁଣି ମୋର ଯେ ସବୁ ପ୍ରବନ୍ଧମାନ ନାନା ଖବର କାଗଜରେ ବାହାରିଛି ସେସବୁ ଏକତ୍ର କରି ପୁସ୍ତକ ଆକାରରେ ପ୍ରକାଶ ପାଇଁ ଟ ୨୦୦୲ର କାଗଜ କାଳ ନେଇ ପଲ୍ଲୀବାସୀ ପ୍ରେସ ପରିଚାଳକ ନାଙ୍ଗରାଜ ଦାସଙ୍କ ଜମା ଦିଆଯାଇଅଛି । କୌଣସି ସଦନୁଷ୍ଠାନ ମନରେ ଜାତ ହେଲେ ଧନପ୍ରତି ବିଚାର ନକରି ପରିଣାମ ପ୍ରତି ଦୃଷ୍ଟି ନରଖି କାର୍ଯ୍ୟ ଆରମ୍ଭ କରିଦେବା ମୋର ଏକ ସ୍ୱଭାବ । କିନ୍ତୁ ଆରମ୍ଭରୁ ଅର୍ଥାଭାବରୁ ଓ ସାହଚର୍ଯ୍ୟ ଅଭାବରୁ ଅତି ଅଳ୍ପ ସମୟରେ ତାହା ସବୁ ନଷ୍ଟ ହୋଇଥାଏ ।

ଗୋଶାଳା ଆବରଣ ମଧ୍ୟରେ ସ୍ୱାମୀ ଶ୍ରଦ୍ଧାନନ୍ଦ ସ୍ମୃତିରକ୍ଷା ଓ ବୈଦିକ ଆର୍ଯ୍ୟଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଶ୍ରଦ୍ଧାନନ୍ଦ ପାଠାଗାର ନାମରେ ଗୋଟିଏ ପକ୍କା ଗୃହ ନିର୍ମାଣ ଆରମ୍ଭ କରିଗଲି । ୧୯୨୯

ସାଲରେ ଆନନ୍ଦ ସାହୁ ରଣପୁର ଠାରୁ ଆସି ଗୋରକ୍ଷାଶ୍ରମ ଅନୁଷ୍ଠାନର ପରିଚାଳକ ନିଯୁକ୍ତ ହେଲେ । ଏହାଙ୍କ ସମୟରେ ଗୋଶାଳା ପୋଖରୀର ପାହାଚ କରାଗଲା ଏବଂ ପ୍ରସ୍ତାବିତ ଶ୍ରଦ୍ଧାନନ୍ଦ ପାଠାଗାରର ମିଳିଦୁଆ ପଡ଼ି ପ୍ରାୟ ଦେଡ଼ହାତ କାନ୍ଥ ଗଢ଼ାଯାଇ ଅର୍ଥାଭାବରୁ କାମ ବନ୍ଦ ରହି ଏହି କାର୍ଯ୍ୟ ୧୯୩୫ ଠାରୁ ଆରମ୍ଭ ହୋଇ ୧୯୩୭ରେ ଆର୍ଯ୍ୟ ମନ୍ଦିର ଶ୍ରଦ୍ଧାନନ୍ଦ ଭବନର ନିର୍ମାଣ କାର୍ଯ୍ୟ ପୂର୍ଣ୍ଣ ହେଲା ।

## ରୋଗ-ଗ୍ରସ୍ତ

ମୋର ୧୯୩୦ ସାଲଠାରୁ ଶରୀର ସ୍ୱାସ୍ଥ୍ୟ ବିଗିଡ଼ିବା ଆରମ୍ଭ ହେଲା । ବଧିରତା, କୋଷ୍ଠକାଠିନ୍ୟ, ବହୁମୂତ୍ର ଓ ବାତ ବିକାର ଇତ୍ୟାଦି ନାନା ରୋଗରେ ଦେହ ପୀଡ଼ିତ ହେବାକୁ ଲାଗିଲା । ନିଜେ ଆପଣା ଆତ୍ମଚରିତ ଏ ପର୍ଯ୍ୟନ୍ତ ଯାହା ଲେଖିଥିଲି ସେତିକି, ଆଉ ଅଧିକ ନିଜେ ଲେଖି ପାରିଲି ନାହିଁ । ମୋର କର୍ମମୟ ଜୀବନରୁ ଅପୂର୍ବ ଅଭିନବ ଭାବମୟ ଚିନ୍ତାପୂର୍ଣ୍ଣ ଲେଖାରୁ ପୁଣି କଥନ ପ୍ରସଙ୍ଗରୁ, ସଙ୍ଗୀ ମାନଙ୍କଠାରୁ ଓ ମୋର ପ୍ରତିଦିନ ଡାଇରୀ ଖାତାରୁ ଆଣି ତାହା ଏ ଜୀବନୀରେ ସଂଗୃହୀତ କରିବେ ।



# ମୋର ଶେଷ ଅନ୍ତ୍ୟେଷ୍ଟି କ୍ରିୟା

ଆଜକୁ ପ୍ରାୟ ୭ ବର୍ଷ ହେବ ମୁଁ ନାନା ରୋଗରେ ପୀଡ଼ିତ ଏବଂ ଅକର୍ମଣ୍ୟ ହୋଇ ପଡ଼ିଛି । ଆଉ କିଛି ଲେଖାପଢ଼ା କରିପାରୁ ନାହିଁ । ମୋହର ଜୀବନର ପ୍ରବଳ ଇଚ୍ଛା ସଫଳ ହୋଇ ପାରିଲା ନାହିଁ, ସେଥିପାଇଁ ମନ ଚିନ୍ତିତ । ସେ ଯାହା ହେଉ ସେ ସବୁ ଭଗବାନଙ୍କ ଇଚ୍ଛା । ଆମ୍ଭ ହିନ୍ଦୁ ସମାଜରେ ଯେଉଁ ଅନ୍ତିମ କ୍ରିୟା ପ୍ରଚଳିତ ତାହା ଏକାନ୍ତ ବେଦ ବିରୁଦ୍ଧ ।

ଜାତି ବିଭାଗ, ପ୍ରତିମା ଉପାସନା ଇତ୍ୟାଦି କୁସଂସ୍କାର ବିରୁଦ୍ଧରେ ତୀବ୍ର ପ୍ରତିବାଦ କରି ଆସୁଥିଲି । ଆଉ କିଛି ନହେଲେ ମଧ୍ୟ ମୋର ଅନ୍ତ୍ୟେଷ୍ଟି-କ୍ରିୟାଟିକ ଯଥା ସମ୍ଭବ ବେଦ ଓ ଯୁକ୍ତି ସଂଗତ ଆଦର୍ଶ ହୋଇ ରହିବା ଉଚିତ ମନେ କରି ଏହି ମୋହର ନିର୍ଦ୍ଧାରଣ ଭାବି ବଂଶଧରମାନଙ୍କ ପାଇଁ ଲେଖିରଖି ଯାଉଛି । ମୁଁ ମରିଯିବା ପରେ ମୋର ଶବଟାକୁ ସ୍ନାନ କରାଇ ନୂତନ ବସ୍ତ୍ର ପରିଧାନ କରାଇ ଶ୍ମଶାନ ଭୂମିକୁ ନେଇ, ଚିତା ଉପରେ ଜାଳିଦେବା ପାଇଁ କେହି ଚିନ୍ତା କରିବ ନାହିଁ ।

ମୋର ଶରୀରର ଯାହା ଓଜନ ଥିବ, ସେହି ଓଜନ ପରିମାଣରେ ଘୃତ ସହ ସୁବାସିତ ଦ୍ରବ୍ୟ ସକଳ ମିଶ୍ରିତ କରି 'ଲୋକାୟ ସ୍ୱାହା' ଇତ୍ୟାଦି ମନ୍ତ୍ରରେ ଆହୁତି ପ୍ରଦାନ କରିବ । ପ୍ରେତ ନାମରେ ବ୍ରାହ୍ମଣ ଭୋଜନ ଦିଆଯିବ ନାହିଁ । ମୋର ସ୍ମୃତି ରକ୍ଷା ସକାଶେ ଦେବାଳୟ, ପୋଖରୀ, ପାଠଶାଳା, ଔଷଧାଳୟ ଇତ୍ୟାଦି ଅନୁଷ୍ଠାନ କରାଯାଇ ପାରିବ । ଶବଦାହ ଓ ପ୍ରେତ ଭୋଜନ ଇତ୍ୟାଦି କ୍ରିୟାରେ ଯାହା ସମ୍ଭବତଃ ୫୦୦ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୁଅନ୍ତା, ସେହିତକ ଧନ କୌଣସି ପାଠଶାଳା ନିର୍ମାଣରେ ବ୍ୟୟ

ଗୋରକ୍ଷାଶ୍ରମକୁ ଦାନ କରିଦେବ। ସେଥିରେ ସପରେ ଗୋଟିଏ ଦାତବ୍ୟ ଔଷଧାଳୟ ପ୍ରତିଷ୍ଠିତ ହେବ । ଏହା ଯଦି ମୋର ଉତ୍ତରାଧିକାରୀ ନ କରନ୍ତି ତେବେ ମୋର ଧର୍ମ ବୁଝିଲେ ନାହିଁ ବୋଲି ବାକୁ ହେବ । ଆମ୍ଭ ଜାତିଆଣ ଭାବରେ ଏହି ପ୍ରେତାନ୍ନ ଦାନ ଓ ଭୋଜନ ନିଷେଧ କରାଯାଇ ଥିଲେ ହେଁ ଆମ୍ଭ ବ୍ରାହ୍ମଣମାନେ ସେହି ପ୍ରଲୋଭନ ଛାଡ଼ିପାରୁ ନାହାନ୍ତି । ଆଶାକରେ ଭବିଷ୍ୟ ବଂଶଧରମାନେ ଏହି ବିଷୟ ଶିକ୍ଷା କରିବେ । ଏଥିରୁ ତିନ ଗୋଟି କପି ସମାଜ ଇତ୍ୟାଦି ସମ୍ବାଦ ପତ୍ରରେ ପ୍ରକାଶ କରାଇ ଦେବେ ।

ଶ୍ରୀବୃନ୍ଦ ପଣ୍ଡା — ତା ୨୩ । ୧୧ । ୪୨

**ଶେଷ ଜୀବନ**— ଛତ୍ରପୁରଠାରୁ ଫେରି ଆସିବା ଭ୍ରାତୁଷ୍ପୁତ୍ର ରଘୁନାଥ ପଣ୍ଡା ଓ ରାମନାଥ ପଣ୍ଡାଙ୍କ ଗୃହରେ ରହିଲେ । ପରଦିନ ତାଙ୍କର ସ୍ତ୍ରୀ ଓ ଝିଅ ତାଙ୍କସହ ବହୁତ ସଂଗ୍ରାମ କରି ତାଙ୍କୁ ନେଇ ଆସିଲେ । ଶ୍ରୀ ରଘୁନାଥ ପଣ୍ଡା ସାଙ୍ଗରେ ଆସି ପଣ୍ଡାଜୀଙ୍କୁ ଆଶ୍ରମରେ ଛାଡ଼ି ଦେଲେ । ପଣ୍ଡାଜୀ ଜୀବନର ଶେଷ ସଂଗ୍ରାମରେ ମଧ୍ୟ ଆଶ୍ରମରେ ଉପସ୍ଥିତ ହୋଇ ଯଜ୍ଞ ମଣ୍ଡପ ପାଇଁ ପ୍ରାରମ୍ଭିକ କାର୍ଯ୍ୟ ସକାଶେ ଦେଇଥିବା ଟଙ୍କାର କାର୍ଯ୍ୟ ଆରମ୍ଭ ହୋଇ ନଥିବା ଦେଖି ବଡ଼ ବିରକ୍ତି ଓ ଦୁଃଖ ପ୍ରକାଶ କଲେ । ସେହିଦିନ ତାଙ୍କ ସ୍ତ୍ରୀ ଓ ଜାମାତା ଆସି ତାଙ୍କୁ ରସଲକୁଣ୍ଡା ନେଇଗଲେ । ରସଲକୁଣ୍ଡାରେ ସେ ପ୍ରାୟ ୮।୧୦ ଦିନ ରହିଥିଲେ । ବେଳେବେଳେ ତାଙ୍କର କେତେ ବିଶ୍ୱସ୍ତ କର୍ମୀ ଓ ବନ୍ଧୁଙ୍କର ସାକ୍ଷାତ ମଧ୍ୟ ହୁଏ । ୧୯୪୩ ମସିହା ମେ ମାସ ଶେଷ ସପ୍ତାହରେ ଦିନେ ପଣ୍ଡାଜୀଙ୍କୁ ଗୋଟିଏ ବଳଦ ଗାଡ଼ିରେ ମନ୍ଦାର ନେଇ ଆସିଲେ । ମନ୍ଦାର ଡାଣ୍ଡ ମଝିରେ ଗାଡ଼ି ଗଲୁଥାଏ । ଗାଡ଼ି ମଧ୍ୟରେ ପଣ୍ଡାଜୀ ବସିଛନ୍ତି । ମନ୍ଦାର ଗ୍ରାମ ନିବାସୀ ବୈଷ୍ଣବ ଲେଙ୍କା

ଏବଂ ସନ୍ନ୍ୟାସୀ ଗୋସ୍ବାମୀଙ୍କ ଦେଖା ହେଲା । ଗାଡ଼ି ସାଙ୍ଗରେ ସେ ଦୁଇଜଣଙ୍କୁ ଡାକ ଘରଠାକୁ ଆସିଲେ । ସେ ଦୁଇଜଣଙ୍କୁ ଉପଦେଶ ଛଳରେ ଗ୍ରାମରେ ଓ ଲୋକଙ୍କର ମଙ୍ଗଳ କାର୍ଯ୍ୟ କରିବା ପାଇଁ ବହୁତ ଗୁଡ଼ିଏ ଉପଦେଶ ଦେଲେ ଏବଂ ଆଉ ଏ ଜଗତରେ ରହିବାକୁ ଭଲ ଲାଗୁ ନାହିଁ ବୋଲି କହିଲେ । ଏ ଘଟଣା ସକାଳ ୧୦ ଘଣ୍ଟା ସମୟର କଥା । ସେତିକିବେଳେ ପଣା ଟିକିଏ ପିଇବାକୁ ଇଚ୍ଛାକଲେ, କିନ୍ତୁ ତାଙ୍କ ପାଟିକୁ ପଣା ଆଉ ଭଲ ଲାଗିଲା ନାହିଁ । ସେ ଗୋଟିଏ ଖଟରେ ଶୋଇ ପଡ଼ିଲେ । ଆଉ ଆଖି ଫିଟାଇ ଚାହିଁ ନାହାନ୍ତି ବା କଥାବାର୍ତ୍ତା କରି ନାହାନ୍ତି । ମହାରାଜ ଆସିବା ଠିକ ଏକ ସପ୍ତାହ ପରେ ଜ୍ୟେଷ୍ଠ ଶୁକ୍ଳ ତୃତୀୟା ସନ ୧୩୫୦ ସାଲ ସକାଳ ୮ ଘଟିକା ସମୟରେ ୭୮ବର୍ଷ ବୟସରେ ତାଙ୍କର ଶେଷ ପ୍ରାଣବାୟୁ ଇହଧାମ ପରିତ୍ୟକ୍ତ ହେଲା । ତାଙ୍କର ସଂକଳ୍ପିତ ବେଦ ବିଦ୍ୟାଳୟ ଚନ୍ଦନ ଅର୍ଥାତ୍ ଶୁକ୍ଳ ଦ୍ୱିତୀୟା ଦିନ ଆଶ୍ରମଠାରେ 'ଶ୍ରୀବତ୍ସ ଆର୍ଯ୍ୟ ପାଠାଶାଳା' ଅନୁଷ୍ଠିତ ହୋଇ ସାଇଥିଲା ।

**ଶେଷ କୃତ୍ୟ** – କ୍ଷଣକ ମଧ୍ୟରେ ଚତୁର୍ଦ୍ଦିଗ ଗ୍ରାମମାନଙ୍କରେ, ସହରରେ ଖବରଟା ଆପେ ଆପେ ରଷ୍ଟ ହୋଇଗଲା । ସ୍ୱର୍ଗୀୟ ଶ୍ରୀବତ୍ସ ପଣ୍ଡାଙ୍କ ମୃତଦେହ ଦର୍ଶନ ପାଇଁ ବହୁଲୋକ ରୁଣ୍ଡ ହୋଇଗଲେ । ଦୈବଯୋଗ ତା ପୂର୍ବରୁ ଶ୍ରୀ ଧାନନନ୍ଦ ବେହେରା ନିଜର ସ୍ୱଗ୍ରାମ ରତ୍ନପୁର ଠାରେ ଥିଲେ । ଏଣୁ ସେ ମଧ୍ୟ ଆସିଲେ । ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ ଗୋବରା ଠାରୁ ଆସିଲେ । ଗୋରକ୍ଷାଶ୍ରମସ୍ଥ ଶ୍ରୀବତ୍ସ ଆର୍ଯ୍ୟ ପାଠଶାଳାର ବ୍ରହ୍ମଚାରୀ ବୃନ୍ଦ ଓ କର୍ମୀ ବାସୁଦେବ ତ୍ରିପାଠୀ, ଶ୍ରୀ ଦଣ୍ଡପାଣି ମହାପାତ୍ର ଆସି ପହଞ୍ଚିଲେ । କୁଟୁମ୍ବ ମଧ୍ୟରୁ ସମସ୍ତ କୁଟୁମ୍ବମାନେ ତା ପୂର୍ବରୁ ଜଗି ରହି ଥାଆନ୍ତି । ଯାମାତା, ଝିଅ, ନାତି

ନାତୁଣୀମାନେ ସମସ୍ତେ ଥାନ୍ତି; କିନ୍ତୁ ଦୈବର ବିଡ଼ମ୍ବନା, ପ୍ରଫୁଲ୍ଲ-ନାମକ ଯେଉଁ ନାତିଟିକୁ ତାଙ୍କର ଅନିଚ୍ଛା ସତ୍ତ୍ୱେ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ଯାଇଥିଲି ସେ ଉକ୍ତ ସମୟରେ କଲିକତା ଯାଇଥିଲେ । ଅନ୍ତ୍ୟେଷ୍ଟି କ୍ରିୟା ବା ନରମେଧ ଯଜ୍ଞରେ ସେ ଯୋଗ ଦେଇ ନଥିଲେ ବଡ଼ ସମାରୋହରେ ତାଙ୍କର ନଶ୍ୱର ଦେହ ଶ୍ମଶାନ ଭୂମିକୁ ବାହାର କରାଗଲା ଏବଂ ସେଠାରେ ବୈଦିକ କର୍ମକାଣ୍ଡର ସଂସ୍କାର ବିଧି ଅନୁସାରେ ଘୃତ, ଚନ୍ଦନ କାଠ ଓ ଧୂପ ଇତ୍ୟାଦିରେ ନରମେଧ ଯଜ୍ଞ ସମାପ୍ତ କରାଯାଇଥିଲା । ଦେଶ ଓ ଜାତିଲାଗି ହୃଦୟରେ ଅନୁତାପ କରିବା ପାଇଁ ଓ ଗରିବମାନଙ୍କୁ ସମୟ ସମୟରେ ସାହାଯ୍ୟ ଦେବାକୁ ପର ଦୁଃଖରେ ଦୁଃଖୀ ଓ ପର ସୁଖରେ ସୁଖୀ ହେବାକୁ ଗଞ୍ଜାମର ସୂର୍ଯ୍ୟ ବେଶୀ ଦିନ ରହି ପାରିଲା ନାହିଁ; ଚିରଦିନ ପାଇଁ ଅସ୍ତ ହୋଇଗଲା ।

—0—

## —ପରିଶିଷ୍ଟ—

# ଗୋରକ୍ଷାଶ୍ରମ ପରିଚାଳନା ନିୟମାବଳୀ

ଗୋରକ୍ଷାଶ୍ରମର ବର୍ତ୍ତମାନ ଅବସ୍ଥା ଏବଂ ସ୍ଥାୟୀ ସମ୍ପତ୍ତିର ବାର୍ଷିକ ଆୟ ଅନ୍ଦାଜ ୬୦୦ ଟଙ୍କା ଧରି ତଦନୁଯାୟୀ ନିମ୍ନୋକ୍ତ ବ୍ୟୟ ଓ ପରିଚାଳନା ପ୍ରଣାଳୀର ବ୍ୟବସ୍ଥା କରାଯାଇଅଛି ।

୧- ଗୋଶାଳାରେ ୨୦ ପର୍ଯ୍ୟନ୍ତ ଗାଈ ରଖିବାକୁ ହେବ । ବୁଢ଼ୀ ଗାଈ ୧୦ ପୁଣି ବୟସ ଥିବା ଗାଈ ୧୦ ରହିବେ । ଗୋଶାଳାର ଆଦାୟ ଅନୁପାତରେ ଗାଈ, ବାଛୁରି, ବଳଦ ଓ ଷଣ୍ଢ ସଂଖ୍ୟା ବଢ଼ି ପାରିବ ।

୨- ଗୋଶାଳାରେ ବର୍ତ୍ତମାନ ବଳଦ ରଖାଯାଇ ପାରିବନାହିଁ । କେବଳ ଆଦର୍ଶ ସକାଶେ ବୁଢ଼ା ବଳଦ ଏକହଳ ମାତ୍ର ରଖାଯାଇ ପାରିବ । ପାଣଙ୍କୁ ବିକାଯାଉଥିବା ଟ୧୫ ପର୍ଯ୍ୟନ୍ତ ମୂଲ୍ୟର ଏକହଳ ବୁଢ଼ା ବଳଦକୁ ଯାବତ ଜୀବନ ପୋଷି ରଖାଯାଇ ପାରିବ ।

୩- ଗୋ-ଚାରଣ ସକାଶେ ଅନ୍ତତଃ ଏକ ଏକର ଜମି ଗୋଶାଳା ଚାରିପଟେ ଗୋଚର କରି ରଖିବାକୁ ହେବ । ପୁଣି ଅନ୍ୟତ୍ର ଗୋଚର ଜମି ପରିମାଣ ଯଥାସାଧ୍ୟ ବଢ଼ାଇବାକୁ ହେବ ଏବଂ ଗୋ-ଖାଦ୍ୟ ଉତ୍ପାଦନ କରିବାକୁ ହେବ ।

୪- ଗୋଶାଳା ପଡ଼ିଆ ଅନ୍ତର୍ଭୁକ୍ତ ସ୍ଥୂଳତଃ ୪ ଭାଗରେ ବିଭକ୍ତ ହୋଇ ରହିବ ।

କ) ଗୋଶାଳା ଓ ତନ୍ନିକଟବର୍ତ୍ତୀ ଗୋଚର ଓ ଅନ୍ୟତ୍ର ଗୋଚର ।

ଖ) ଆଶ୍ରମ ଓ ତତ୍ସଂଲଗ୍ନ ବଗିଚା ଓ କୃଷିକ୍ଷେତ୍ର ।

ଗ) ଗୋଶାଳା ପଲ୍ଲୀ ଯନ୍ଧିରେ ଗୋଶାଳା ରକ୍ଷକ, ଗୁଳକ, ଓ ଗୃକରମାନେ ପୁଣି ଅନ୍ୟାନ୍ୟ ଲୋକେ ନିବାସ କରି ପାରିବେ ଏବଂ ଆପଣାର ଘରବାଡ଼ି, ବଗିଚା ଗୃଷ ଇତ୍ୟାଦି କରି ପାରିବେ ।

ଘ) **ଖଳା**—ଯନ୍ଧିରେ ଧାନ୍ୟାଦି ଶସ୍ୟ ଆଦାୟ କରାଯିବ ।

୫— ଆଶ୍ରମ ବଗିଚା ଓ କୃଷି ନିମନ୍ତେ ପ୍ରାୟ ଏକ ଏକର ମାତ୍ର ଜମି ରଖାଯିବ । ତନ୍ମଧ୍ୟରେ ନାନାବିଧ ଫୁଲ, ଫଳ, ପତ୍ର, ମୂଳ ଓ ଶସ୍ୟାଦି ଉତ୍ପନ୍ନ କରାଯିବ । ଉକ୍ତ ଫଳମୂଳ ଶସ୍ୟାଦି ଆଶ୍ରମବାସୀମାନଙ୍କ ବ୍ୟବହାରରେ ଲାଗିବ ଏବଂ ଉଦ୍ବୃତ୍ତ ପଦାର୍ଥ ବିକ୍ରୀ ହୋଇ ଗୋରକ୍ଷାଶ୍ରମ ଜମାରେ ମିଶିବ ।°

୬— ଗୋରକ୍ଷା ଓ ଗୋପାଳନ ସକାଶେ ମାସିକ ଟ୧୦ ପର୍ଯ୍ୟନ୍ତ ବ୍ୟୟିତ ହେବ ।

୭— ଆଶ୍ରମ କର୍ମଚାରୀ ଓ ଗୃକର ନୌକରମାନଙ୍କ ଘତ ବେତନରେ ମାସିକ ଟ୩୦୲ ପର୍ଯ୍ୟନ୍ତ ବ୍ୟୟ କରାଯିବ ।

୮— ଗୋରକ୍ଷାଶ୍ରମ ନିବାହ ସକାଶେ ନିମ୍ନଲିଖିତ ଗୃକର ଓ କର୍ମଚାରୀ ନିଯୁକ୍ତ ହେବେ ।

କ) ଗୋରୁଗାଈ ଚରାଇବା ନିମନ୍ତେ ମାସିକ ଟ୨୲ ମାତ୍ର ବେତନରେ ଜଣେ ଶ୍ରେଷ୍ଠ ଗୃକର ।

ଖ) ଗୋରୁଙ୍କ ପାଇଁ ପେଜ ପାଣି ଯୋଗାଡ଼ିବା, ଗଛରେ ପାଣିଦେବା, ଆଶ୍ରମ ଝାଡ଼ୁ କରିବା, ବାସନ ଆଦି

ମାଜିବା ଇତ୍ୟାଦି କାମ କରିବା ନିମନ୍ତେ ମାସିକ ୫୨୯
ବେତନରେ ଜଣେ ଗୃକର ବା ଗୃକରାଣୀ ।

ଗ) ଗୋଶାଳା ଓ ଆଶ୍ରମର ସକଳ ଅବସ୍ଥାରେ ସମସ୍ତ କାମ କରିବା, ଗୋବତ୍ସମାନଙ୍କ ରକ୍ଷଣାବେକ୍ଷଣ କରିବା, ଆଶ୍ରମ ବଗିଚ୍ଚ କୃଷି କରିବା ଇତ୍ୟାଦି କାମ ସକାଶେ ମାସିକ ୫୮୯ ବେତନରେ ଜଣେ ହଳିଆ ଗୃକର ।

ଘ) ଗୋରକ୍ଷାଶ୍ରମ, ଗୋଶାଳା, ଗୋଶାଳା ପଲ୍ଲୀ, ସମସ୍ତ ବିଭାଗର ପରିଗୃଳନ ଓ ତତ୍ତ୍ୱାବଧାରଣ ନିମନ୍ତେ ମାସିକ ୫୧୭୯ ବେତନରେ ଜଣେ ଗୃଳକ ବା କର୍ମୀ । ଏହି ଗୃଳକଙ୍କୁ ମାସିକ ୫୧୭୯ ବେତନ ବାହାରେ ବାର୍ଷିକ ୩ ଭରଣ ମାଣ ଧାନ ଦିଆଯିବ । ସେହି ଗୃଳକ ଆଶ୍ରମରେ ନିବାସ କରି ରହିବେ ।

ଙ) ଗୋଶାଳା ଆଶ୍ରମ ଏବଂ ଗୋଶାଳା ପଲ୍ଲୀ ଜଗିବା ନିମନ୍ତେ ଏବଂ ପରେ ଗୃଳକଙ୍କ ହୁକୁମ ଚଳାଇବା ସକାଶେ ଜଣେ ଜଗାଳି ଦଣ୍ଡାସି, ଏହାଙ୍କୁ ଜୀବନ ନିର୍ବାହ ସକାଶେ ଦୁଇ ଏକର ପଦର ଜମି ଦିଆଯିବ । ଘର-ତୋଳିବା ନିମନ୍ତେ ଉହ ଦିଆଯିବ, ପୁଣି ଗୋଶାଳା ପଲ୍ଲୀବାସୀମାନଙ୍କଠାରୁ ଆଦାୟ ହୋଇ କିଛି ମାସିକ ବା ବାର୍ଷିକ ଦିଆଯିବ ।

୯—ସାମୟିକ ବ୍ୟୟର ତାରତମ୍ୟ ଦୃଷ୍ଟିରେ (୭ ନିୟମ) ଗୋପାଳନ ବ୍ୟୟ ବାବଦରୁ (୭ ନିୟମ) ଆଶ୍ରମ ବ୍ୟୟ ବାବଦକୁ ଏବଂ ଆଶ୍ରମ ବ୍ୟୟରୁ ଗୋପାଳନ ବ୍ୟୟକୁ ୫୧୦୯ ପର୍ଯ୍ୟନ୍ତ ନିଆ ଯାଇପାରେ ।

୧୦—ପ୍ରତିବର୍ଷ ଶେଷ ସଂକ୍ରାନ୍ତିଠାରୁ ଗୋରକ୍ଷାଶ୍ରମର ବର୍ଷ ଆରମ୍ଭ କରିବାକୁ ହେବ । ଶେଷ ସଂକ୍ରାନ୍ତି ଦିନ ଗୋରକ୍ଷାଶ୍ରମରେ ସଭା ହେବ । ନାନା ସ୍ଥାନରୁ ନାନାଲୋକ ନିମନ୍ତ୍ରିତ ହେବେ । ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କୁ ସତ୍କାର କରାଯିବ ଏବଂ ସେହି ସଭାରେ ଗୋରକ୍ଷାଶ୍ରମର ଆୟ ବ୍ୟୟ ହିସାବସହ ବାର୍ଷିକ ବିବରଣୀ ପାଠ କରାହେବ । ଉକ୍ତ ବାର୍ଷିକ ବିବରଣୀର ସାରାଂଶ ଖବର କାଗଜରେ ପ୍ରକାଶିତ ହେବ ।

୧୧—ଗୋଶାଳା ଓ ଆଶ୍ରମ ମଧ୍ୟବର୍ତ୍ତୀ ଜାଗାରେ ଗୋଟିଏ ଦୀପସ୍ତମ୍ଭ ପୋତା ରହିବ । ଅନ୍ଧାରି ପନ୍ଦର ଦିନ ତହିଁରେ ଦୀପ ଦିଆଯିବ । ଏହି ଦୀପ ସକାଶେ ମାସକୁ ୫୦୯ର କରାସିନ ତେଲ ଖର୍ଚ୍ଚ ହେବ ।

୧୨—ଗୋଶାଳାର ଦୁଗ୍ଧବତୀ ଗାଈ ମାନଙ୍କର କ୍ଷୀର ଆଶ୍ରମର ଅତିଥି, ଅଭ୍ୟାଗତମାନଙ୍କୁ ଦିଆଯାଇ ଅବଶିଷ୍ଟ କ୍ଷୀରରୁ ଘୃତ ଆଦି ବାହାର କରାଯିବ । ଦୁଗ୍ଧ, ଘୃତାଦି ବିକ୍ରୀ କରି ଆଦାୟ ହେବା ଧନ ଗୋରକ୍ଷାଶ୍ରମ ପାଣ୍ଠିରେ ଜମାହେବ ।

୧୩—ଗୋଶାଳାରୁ ଉତ୍ପନ୍ନ ହେବା ଘୃତରେ ଆଶ୍ରମରେ ନିତ୍ୟ ସନ୍ଧ୍ୟାରେ ଘୃତ ଦୀପ ଜଳିବ । ପୁଣି ନିତ୍ୟ ବା ନୈମିତ୍ତିକ ଯଜ୍ଞରେ ହୋମ କରାଯିବ ।

୧୪— ଗୋରକ୍ଷାଶ୍ରମରେ ଅନେକ ସମୟରେ ଅନେକ ପ୍ରକାର ଉତ୍ସବ କରାଯିବ । ଯଥା— ଗହ୍ମା ପୂର୍ଣ୍ଣିମା, ଗୋପାଷ୍ଟମୀ, କୁମାର ପୂର୍ଣ୍ଣିମା, ମେଷ ସଂକ୍ରାନ୍ତି ।

୧୫—ଗୋରକ୍ଷାଶ୍ରମ ଉତ୍ସବମାନଙ୍କରେ ରଥ୍ୟୁତମାନେ ଗାଈ ମାନଙ୍କ ପାଇଁ ଗୋଟିଏ ଲେଖାଏଁ ଘାସ ବା ପାଳ ଦେବେ । ପୁଣି ଅନ୍ୟ ଗୋଶାଳା ଗ୍ରାମବାସୀମାନେ ମୁଠିଏ ଲେଖାଏଁ କୁଣ୍ଡା ଦେବେ ।

ଗୋଶାଳା ଗ୍ରାମବାସୀ ସମସ୍ତେ ଯେଝା ଶକ୍ତି ସୁବିଧା ଅନୁଯାୟୀ ଉତ୍ସବରେ ଯୋଗ ଦେବେ ।

୧୬ – ଗୋଶାଳାରେ ଗୋରୁ ଗୁଡ଼ିକ ଦେଲେ ଗୋରୁ ଗୋଟିକେ ତାର ଯାବଜ୍ଜୀବନ ପରିପୋଷଣ ସକାଶେ ଅନ୍ୟୂନ ୫୦୦ ଦେବାକୁ ହେବ ।

୧୭ – ଗୋଶାଳାରେ ଗୋରୁ ଦେବା ଦାତାର ଏବଂ ଗୋରୁର ଅବସ୍ଥା ଦୃଷ୍ଟିରେ ଗୋରୁ ଗୋଟିକେ ଦିଆଯିବାକୁ ଥିବା ଦକ୍ଷିଣା ୫୦୦ କିମ୍ବା ତାହାର କୌଣସି ଅଂଶ ମାଫ କରି ଦିଆଯାଇ ପାରିବ ।

୧୮ – ଗୋଶାଳାର ଉପୁଡ଼ମାନଙ୍କୁ ଦିଆଯିବା ଭିନ୍ନ ଗୁଡ଼ି ଅନ୍ୟ କେହି ଲୋକ ଗୋଶାଳା ପଲ୍ଲୀରେ ଘର ତୋଳିଲେ ତାହାକୁ ବାର୍ଷିକ ଅନ୍ୟୂନ ଏକଅଣା ହିସାବରେ ଗୋମାତାଙ୍କ ଅମୃତ ମଣୋହି ସକାଶେ କରି ଦେବାକୁ ହେବ ।

୧୯ – ଗୋଶାଳା ପଲ୍ଲୀରେ ନିବାସ କରି ରହିବା ନିମନ୍ତେ ୧୯୨୫ ଅଗଷ୍ଟ ମାସ ଠାରୁ କୌଣସି ଗୋଟିଏ ପରିବାର ସକାଶେ ସାଧାରଣତଃ ବାରହାତରୁ ଅଧିକ ଭିନ୍ନ ଦିଆଯାଇ ପାରିବ ନାହିଁ ।

୨୦ – କର୍ମୀର କର୍ତ୍ତବ୍ୟ କାର୍ଯ୍ୟାବଳୀ – ଗୋଶାଳାର ଗୋରୁ ଗାଈମାନଙ୍କ ସେବା ଶୁଶ୍ରୂଷା ରକ୍ଷଣାବେକ୍ଷଣ ବିଶେଷରେ ଅନ୍ତତଃ ଦିନରେ ଦୁଇଥର ସେମାନଙ୍କ ଖିଆପିଆ, ଚରବୁଲା, ଶୁଆ ବସା, ରୋଗ ବିରାଗ ନିଜେ ପରିଦର୍ଶନ କରିବାକୁ ହେବ । ଗୋଚର, ଗୋଖାଦ୍ୟ, ଗୋଶାଳା, ଏବଂ ଆଶ୍ରମର ସୁରକ୍ଷା କରିବାକୁ ହେବ । ତତ୍ସମ୍ବନ୍ଧ

ସମସ୍ତ ପଦାର୍ଥ ନିରାପଦ ରଖିବାକୁ ହେବ । ଗୋରକ୍ଷାଶ୍ରମ ଜମିବାଡ଼ିରୁ ଧାନ୍ୟାଦି ଶସ୍ୟ ଫଳ ଇତ୍ୟାଦି ଆଦାୟ କରିବାକୁ ହେବ । ସର୍ବ-ସାଧାରଣଙ୍କ ଅବଗତି ସକାଶେ ଆୟବ୍ୟୟ ହିସାବପତ୍ର ଠିକ୍ ରଖି-ବାକୁ ହେବ ଏବଂ ବାର୍ଷିକ କାର୍ଯ୍ୟ ବିବରଣୀ ପ୍ରକାଶ କରିବାକୁ ହେବ । ଗୋରକ୍ଷାଶ୍ରମ ଚତୁର୍ଦ୍ଦିଗରେ ୭ ମାଇଲ ମଧ୍ୟବର୍ତ୍ତୀ ଗ୍ରାମମାନଙ୍କ ଘାସ ଚନ୍ଦା ଆଦାୟ କରିବାକୁ ହେବ । ପୁଣି ଗୋଚର ଗୋଶାଳା; ଓ ଗୋରକ୍ଷାର ପ୍ରଚାର କରିବାକୁ ହେବ ।

୨୧ — ଏହି ଗାଈ ବାଛୁରି ବା ବଳଦ ମରିଗଲେ ତାହାକୁ କେହି ଗୋମାଂସ ଖିଆ ଲୋକଂକୁ ଦିଆଯିବ ନାହିଁ । ପୋତାଇ ଦେବାକୁ ହେବ । ସେହି ଶବ ସଂସ୍କାର ସକାଶେ ଶବ ଗୋଟିକେ ୫୧୯ ପର୍ଯ୍ୟନ୍ତ ଖର୍ଚ୍ଚ କରିବାକୁ ହେବ ।

ଶ୍ରୀବତ୍ସ ପଣ୍ଡା, ତା ୭ । ୮ । ୨୫

## ଗୋରକ୍ଷାଶ୍ରମ ନ୍ୟାସ ପତ୍ର

ତା ୨୫ । ୧୧ । ୧୯୬୯

ଆମ୍ଭେ ଶ୍ରୀବତ୍ସ ପଣ୍ଡା-ପିତା — ଦାଶରଥୀ ପଣ୍ଡା — ବ୍ରାହ୍ମଣ — ଭୂତପୂର୍ବ ସବ୍‌ରେଜିଷ୍ଟ୍ରାର — ଗଞ୍ଜାମ ଜିଲ୍ଲା — ଘୁମୁସର ତାଲୁକା, ମନ୍ଦାର ଗ୍ରାମ-ନିମ୍ନଲିଖିତ ସେଟଲମେଣ୍ଟ ଓ ଟ୍ରଷ୍ଟ ଦସ୍ତାବିଜ ଲେଖିଦେଉଛୁଁ ୨-ନମ୍ବର ମଧ୍ୟରେ ୧୯୨୩ ସାଲରେ ଗୋରକ୍ଷାଶ୍ରମ ନାମରେ, ଆମ୍ଭେ ଏକ ଅନୁଷ୍ଠାନ ସ୍ଥାପନ କରିଅଛୁଁ ।

## ଗୋରକ୍ଷାଶ୍ରମର ଉଦ୍ଦେଶ୍ୟ

୧ । ବୃଦ୍ଧ ଅକର୍ମଣ୍ୟ, ପରିତ୍ୟକ୍ତ ଗାଈମାନଙ୍କୁ ପୋଷି ପାଳି ରଖିବା ।

୨ । ସର୍ବସାଧାରଣଙ୍କ ପାଇଁ ନିତ୍ୟ ଶୀର ଆଦି ଗୋରସ ଯୋଗାଇବା ।

୩ । କ) ଯଥା ସମ୍ଭବ ଗୁରୁକୁଳ ନିୟମାନୁସାରେ ଏକ ପାଠଶାଳା ସ୍ଥାପନ କରିବା ।

ଖ) ସ୍ଥାନୀୟ ଆର୍ଯ୍ୟ ସମାଜ ଗଠନ କରିବା ।

ଗ) ବୈଦିକ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଓଡ଼ିଆରେ ଏକ ପତ୍ରିକା ପ୍ରକାଶ କରିବା । ଏହିସବୁ ଉଦ୍ଦେଶ୍ୟ ସାଧନ ସକାଶେ ନିମ୍ନ ନିବୃତ୍ତ ସମ୍ପତ୍ତି ସମର୍ପଣ କରାଇ ଦେଇଅଛୁଁ ।

୪ । ଉକ୍ତ ସମ୍ପତ୍ତି ଉକ୍ତ ଉଦ୍ଦେଶ୍ୟ ସାଧନ ସକାଶେ ଦିଲ୍ଲୀ ସାର୍ବଦେଶିକ ଆର୍ଯ୍ୟ ପ୍ରତିନିଧି ସଭା ଜିମା ନ୍ୟସ୍ତ କରିଦେଇ ଅଛୁ । ଉକ୍ତ ସମ୍ପତ୍ତିର ରକ୍ଷଣାବେକ୍ଷଣ ଓ ଅଭିବୃଦ୍ଧି କରିବା ଏବଂ ଉକ୍ତ ଉକ୍ତ ଅନୁଷ୍ଠାନ ପରିଚାଳନା କରିବାକୁ ପୁଣି ସେଥି ସକାଶେ କାର୍ଯ୍ୟ ଓ ଚାକର ନୌକର ନିଯୁକ୍ତ କରି ତହିଁର ସମସ୍ତ ତତ୍ତ୍ୱାବଧାରଣ ଅଧିକାର ଉକ୍ତ ସଭାକୁ ଦେଇଅଛୁ । ଉକ୍ତ ସଭାର ଉକ୍ତ ଅନୁଷ୍ଠାନର ପରି-ଚାଳନାରେ ଆମ୍ଭ ଜୀବନରେ ଆମ୍ଭେ ଯଥାଶକ୍ତି ସହଯୋଗିତା କରିବୁ । ପୁଣି ଆମ୍ଭ ବିୟୋଗରେ ଆମ୍ଭର କେହି ଉତ୍ତରାଧିକାରୀ କୌଣସି ଆପତ୍ତି ବା ପ୍ରତିରୋଧ କରି ପାରିବେ ନାହିଁ ।

୫ । ଏହି ପ୍ରଦତ୍ତ ସମ୍ପତ୍ତି ଉକ୍ତ ଅନୁଷ୍ଠାନର ମୂଳଧନ ହୋଇ ରହିବ । ତହିଁରୁ ଉତ୍ପନ୍ନ ହେବା ଧନରେ ଅନୁଷ୍ଠାନ ନିର୍ବାହିତ ହେବ । ବର୍ତ୍ତମାନ ଉକ୍ତ ସମ୍ପତ୍ତି ଉକ୍ତ ଅନୁଷ୍ଠାନ ସକାଶେ ପର୍ଯ୍ୟାପ୍ତ ନଥିବାରୁ ଉକ୍ତ ସଭା ତହିଁରେ ଅନ୍ୟ ସମ୍ପତ୍ତି ଯୋଗକରି ପାରିବେ ପୁଣି କେଉଁ

ବିଭାଗରେ କେତେ ଖର୍ଚ୍ଚ ଆବଶ୍ୟକ ତାହା ବିଚାର କରି ସମସ୍ତ ବିଷୟ ନିର୍ବାହ କରି ପାରିବେ । ଉକ୍ତ ସଭାକୁ ଅଧିକାର ଦିଆଯାଉ ଅଛି ଯେ ଅଧିକ ଲାଭଜନକ ହେବା ପକ୍ଷରେ ଉକ୍ତ ସଭା ନିମ୍ନ ୯ (ଗ) ବର୍ଣ୍ଣିତ ଭୂସମ୍ପତ୍ତିକ ବିକ୍ରୟାଦି ଦ୍ୱାରା ନଗଦ ଟଙ୍କାରେ ପରିଣତ କରି ପାରିବେ ଏବଂ ଉକ୍ତ ଭୂସମ୍ପତ୍ତିର କିମ୍ବା ତା ବଦଳ ନଗଦ ଟଙ୍କାରୁ ଆଦାୟ ହେବା ଧନ ଏହି ନ୍ୟାସପତ୍ର ବର୍ଣ୍ଣିତ କାର୍ଯ୍ୟ ଛଡା ଅନ୍ୟ କୌଣସି କାର୍ଯ୍ୟରେ ଲଗାଇ ପାରିବେ ନାହିଁ । ୯ (କ) ଓ (ଖ) ବର୍ଣ୍ଣିତ ଆଶ୍ରମ ଗୋଶାଳା, ପାଠଶାଳା, ଧର୍ମଶାଳା, ଗୋଚର ପଡ଼ିଆ ଜାଗା ଇତ୍ୟାଦି ଯେ କୌଣସି ସମ୍ପତ୍ତି ଦାନ, ବିକ୍ରୟ ବନ୍ଧକାଦି କୌଣସି ପ୍ରକାର ହେଉ ହସ୍ତାନ୍ତର କରାଯାଇ ପାରିବ ନାହିଁ

୬ । ଉକ୍ତ ଅନୁଷ୍ଠାନର ପରିଚାଳନା ଉକ୍ତ ସମ୍ପତ୍ତିର ରକ୍ଷଣାବେକ୍ଷଣ ସକାଶେ ଯେଉଁ ସବୁ କ୍ଷମତା ଆବଶ୍ୟକ ହେବ ତାହା ସବୁ ଏହି ନ୍ୟାସ ପତ୍ରଦ୍ୱାରା ଉକ୍ତ ସଭାକୁ ଦିଆଯାଇଅଛି ।

୭ । କ) ଉକ୍ତ ଟ୍ରଷ୍ଟି ଯଦି ଆପଣା କର୍ତ୍ତବ୍ୟରେ ତ୍ରୁଟି କରନ୍ତି, କୌଣସି ଧନ ଅପବ୍ୟୟ ବା ଆତ୍ମସାତ କରନ୍ତି, ଏହି ନ୍ୟାସ ନିର୍ଦ୍ଦିଷ୍ଟ ନିୟମ ବିରୁଦ୍ଧ କାର୍ଯ୍ୟ କରନ୍ତି, ତେବେ ଆମ୍ଭେ ପୁଣି ଆମ୍ଭ ବିୟୋଗାନ୍ତରେ ଆମ୍ଭ ଭକ୍ତମାନେ ସର୍ବସାଧାରଣ ଅଦାଲତ ସାହାଯ୍ୟରେ ଏହି ଟ୍ରଷ୍ଟି ରଦ୍ କରିଦେଇ ଅନ୍ୟ ଟ୍ରଷ୍ଟି ନିଯୁକ୍ତ କରିପାରିବେ ।

ଖ) ଆମ୍ଭେ ଆମ୍ଭ ଇଚ୍ଛା ଓ ଶକ୍ତି ଥିବା ପର୍ଯ୍ୟନ୍ତ ଉକ୍ତ ଅନୁଷ୍ଠାନ ପରିଚାଳନା କରି ପାରିବୁ । ଅନୁଷ୍ଠାନ ଉତ୍ତରୋତ୍ତର ଉନ୍ନତ

ତାହାଡାରେ ଆବଶ୍ୟକ କର୍ମୀ ଶୃକର ନୌକର ଆଦ ନଯୁକ୍ତ କରି ପାରିବୁ ଏବଂ ଅବସ୍ଥାଦୃଷ୍ଟିରେ ବଭାଗ ବଭାଗ ସକାଶେ ବଭିନ୍ନ ପରିମାଣ ବ୍ୟୟ କରିପାରିବୁ କନ୍ତୁ ଉପରୋକ୍ତ କୌଣସି ନୟମର ଅନ୍ୟଥା ବା କୌଣସି ସମ୍ପତ୍ତିର କୌଣସି ପ୍ରକାର ହସ୍ତାନ୍ତର କରି-ପାରିବୁ ନାହିଁ ।

୮ । ଘୁମୁସର ସବରେଜଷ୍ଟ୍ରି ଅଫିସ ୧୯୨୩ ସାଲ ୨୮୧ ନମ୍ବର ରେଜଷ୍ଟ୍ରି କରାଯାଇଥିବା ୫।୩।୨୩ ତାରିଖର ସେଟଲମେଣ୍ଟ ଦସ୍ତାବଜ୍ ତାହା ଉତ୍କଳ ଆର୍ଯ୍ୟ ସମାଜ ନାମକ ଏକ ସମାଜ ହସ୍ତରେ ଆମ୍ଭେ ଏହ ଅନୁଷ୍ଠାନ ଏବଂ ଏହ ପ୍ରଦତ୍ତ ସମ୍ପତ୍ତିରୁ ଥୋକେ ଭୂମି ନ୍ୟସ୍ତକରି ଦେଇଥିଲୁ । କନ୍ତୁ ସେହ ସମାଜ ଆଦୌ ସ୍ଥାପିତ ହୋଇ ନ ହେବାରୁ ଆମ୍ଭେ ଏବେ ଆଇନାନୁସାରେ ଏବଂ ଉକ୍ତ ସେଟଲ-ମେଣ୍ଟରେ ଆମ୍ଭର ରକ୍ଷିତ ଥିବା କ୍ଷମତା ଅନୁସାରେ ଏହ ନ୍ୟାସ ପତ୍ର ଲେଖି ଦେଉଅଛୁ । ପୁଣି ଏଥିରେ ଅନ୍ୟ କଛୁ ସମ୍ପତ୍ତି ଯୋଗକରି ଏହ ଗୋରକ୍ଷାଶ୍ରମ ଅନୁଷ୍ଠାନ ସ୍ଥାପନରେ ଆମ୍ଭର ସମ୍ପୂର୍ଣ୍ଣ ଉଦ୍ଦେଶ୍ୟ ସ୍ପଷ୍ଟ ବ୍ୟକ୍ତ କରୁଅଛୁ ।

୯ । କ) ଆଶ୍ରୀଗୃହ; ପାଠଶାଳା, ଧର୍ମଶାଳା, ବଗିଚ଼ ଗୋଶାଳା, ଗ୍ରାମବସନ୍ତ, ଗୋଚର କର୍ମଚାରୀ ମାନଙ୍କ ନବାସଗୃହ, କୂପ ଏହସବୁ ୨୫୭ ନମ୍ବର ଏକର ୮-୪୯ ଉପରେ କୁରୁଳାଇ ଗ୍ରାମସୀମା ମଧ୍ୟରେ ଅବସ୍ଥିତ ।

ଖ) ଗୋଶାଳା ପୁଷ୍କରିଣୀ— ବାଣଭୁମୁଗ୍ରାମର ଗୋଚର ପରଂପକଂ ସବନମ୍ବର ୪୭୬ ଏକର ୧—୭° ଯାଏ ।

—୦—

# ସ୍ୱର୍ଗୀୟ ଶ୍ରୀବତ୍ସ ପଣ୍ଡାଙ୍କ ରଚିତ ପୁସ୍ତକାବଳୀ 'ପାଣ୍ଡୁଲିପି

୧। ଭୁବନେଶ୍ୱର ଦର୍ଶନ (ଦ୍ୱୟ ଖଣ୍ଡ)
୨। ଉତ୍କଳ ସମାଜିକ ସମିତି
୩। ଅକୃତଜ୍ଞ ଓଡ଼ିଶା
୪। ଜାତୀୟ ଜୀବନ
୫। ବଶିଷ୍ଟ ଚିନ୍ତା (ଧର୍ମ ପ୍ରବନ୍ଧ)
୬। ଦେଶ ନିର୍ମାଣ ପ୍ରାର୍ଥନା
୭। ସମ୍ମିଳନୀ ସନ୍ଧାପତ୍ର
୮। ଓଡ଼ିଆ ସଙ୍ଘ ଓ ଉତ୍କଳ ସଙ୍ଘ
୯। ଉତ୍କଳ ସମ୍ମିଳନୀ ତରଙ୍ଗ ପ୍ରଚାରକ ନାଟକ
୧୦। ହରିନାମ
୧୧। ପୁରୋହିତ ପାଠ
୧୨। ସୌଖ୍ୟପ୍ରକୃ
୧୩। ବିବାହ ଓ ନିୟୋଗ
୧୪। ବୀର୍ଯ୍ୟରକ୍ଷା
୧୫। ଦେବାଙ୍ଗନ ଯାତ୍ରା
୧୬। ମାତୃଭାଷା
୧୭। ତୀର୍ଥଯାତ୍ରା (ଦକ୍ଷିଣାଞ୍ଚଳ)
୧୮। ହରିଜନ ମାନଙ୍କର ବ୍ରାହ୍ମଣପ୍ରାପ୍ତତା
୧୯। କ୍ଷମାନୀତି
୨୦। ତୀର୍ଥଯାତ୍ରା (ଉତ୍ତରାଞ୍ଚଳ)
୨୧। ପାରଳାଖେମୁଣ୍ଡିରେ ଅପୂର୍ବ ମିଳନ
୨୨। ସାହିତ୍ୟ ରାଜ୍ୟର କର୍ତ୍ତା
୨୩। ପୁରୁଷୋତ୍ତମ ପୁର
୨୪। ରାସ୍ତକବ ଓ ଭକ୍ତକବ ସୁରକ୍ଷା
୨୫। ଲୋକନାଥ ରାଓ
୨୬। କବି ଚିନ୍ତାମଣି
୨୭। ସ୍ୱର୍ଗୀୟ ରାଜା ମହେନ୍ଦ୍ରଙ୍କ କମଳେଶ
୨୮। ମୟୂରଭଞ୍ଜ ମହାରାଜା
୨୯। କବି ଫକୀର ମୋହନ
୩୦। ଶ୍ରୀ ବୀର ବିକ୍ରମଦେବ ମହୋଦୟ
୩୧। ଟିକିଲି ଖୋଣ୍ଡ ରାଜାବାହାଦୁର
୩୨। ଅଭିରାମ ଭକ୍ତ
୩୩। ନନ୍ଦପ୍ରମାଣର ଜୀବନଚିନ୍ତା
୩୪। ପୁନର୍ମୂଷିକ ଭବ
୩୫। ଚଂପ ଦନଙ୍କ ପଦଭ୍ୟାର ପ୍ରସଙ୍ଗ

୩୬ । ନାରୀଧର୍ମ ସମାଲୋଚନା
୩୭ । ଶ୍ରୋତା ଓ ବାଚସ୍ପତି
୩୮ । ଜାତୀୟ ଜୀବନ
୩୯ । ସମାଜ ସଂସ୍କାର
୪୦ । ସଂସ୍କାର ବିଧି
୪୧ । ସଂସ୍କାରକ ( ୪ର୍ଥ ଖଣ୍ଡ)

---

# ପ୍ରକାଶିତ ପୁସ୍ତକାବଳୀ

୧ । ସଂସ୍କାର ୧ମ ରୁ ୩ୟ ଖଣ୍ଡ ପର୍ଯ୍ୟନ୍ତ
୨ । ବୈଦିକ ଧର୍ମ
୩ । ରାମାୟଣ ଓ ମହାଭାରତ ସାର ସଂଗ୍ରହ
୪ । ସଂସ୍କାର ସଙ୍ଗୀତାବଳୀ
୫ । ବୋଧନ
୬ । ଆରୋଗ୍ୟ ବିଧାନ
୭ । ଟୋକା ହୃଦୟର ଟୀକା
୮ । ସତ୍ୟାର୍ଥ ପ୍ରକାଶ
୯ । ମିତାହାର ସ୍ୱାସ୍ଥ୍ୟରକ୍ଷା
୧୦ । ନୀତି ଧର୍ମ
୧୧ । ସୂକ୍ତ ସଂଗ୍ରହ
୧୨ । ପଞ୍ଚାମୃତ
୧୩ । ନିବେଦନ
୧୪ । ଖଡ଼ୁବାହୁ ଓ ଚଷାଭାଇ
୧୫ । ଜାତି ଗୀତ
୧୬ । ଅଚ୍ଛୁବ ଜାତି
୧୭ । କଲସ୍ ପତର
୧୮ । ଆର୍ଯ୍ୟ ଧର୍ମ
୧୯ । ପଞ୍ଚ ଦେବତା
୨୦ । ଦତ୍ତାବଜ
୨୧ । ଗୃହାଶ୍ରମ
୨୨ । ଶଶିକଳା ପରିଣୟ ବା ବିଧବା ବିବାହ ନାଟକ
୨୩ । ମୋ ମାତୃଭାଷା
୨୪ । କୋଇଲି ମାଳିକା
୨୫ । ପୁତ୍ର ଶୋକ
୨୬ । ଶ୍ରୁଜପକ୍ଷୀ ପଦ୍ୟ

ଏତଦ୍ ବ୍ୟତୀତ ଆଉ ଅନେକ ପ୍ରକାଶିତ ବହି ଦ୍ରଷ୍ଟବ୍ୟ ।



---

*This edition of 'Autobiography of Sribatsa Panda' in oriya is published & Printed by H. H. Swami Brahmananda Saraswati by arrangement with Vedic Sahitya Sansthan, at Shanti Ashram Press, Ved-vyas, Rourkela-4*